# ଇଚ୍ଛାବତୀ

ଧନଞ୍ଜୟ ଭଞ୍ଜ

ସମ୍ପାଦକ

ଅଧ୍ୟାପକ—ଗୌରୀକୁମାର ବ୍ରହ୍ମା

# ଭୂମିକା

## ଧନଞ୍ଜୟ ଭଞ୍ଜ—

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଓ ଘୁମୁସର ରାଜବଂଶର ପ୍ରଖ୍ୟାତ ସାହିତ୍ୟସେବୀ ରାଜକବି ଧନଞ୍ଜୟ ଭଞ୍ଜ ଓଡ଼ିଶାର ପାଠକ ଓ ପାଠିକାଙ୍କ ନିକଟରେ ସୁପରିଚିତ । ସେ ଖ୍ରୀ: ଅ: ୧୬୭୬—୧୬୦୧ ପର୍ଯ୍ୟନ୍ତ ଶାସନ କରିଥିବାର ଜଣାଯାଏ । ତାଙ୍କ ସମ୍ପର୍କରେ 'ଅନଙ୍ଗରେଖା' ମୁଖବନ୍ଧରେ କେତେକ ତଥ୍ୟ ଉପସ୍ଥାପନ କରାଯାଇଛି । 'ଇଚ୍ଛାବତୀ' ଧନଞ୍ଜୟଙ୍କର କାବ୍ୟମାନଙ୍କ ମଧ୍ୟରେ ନାମ ଦୃଷ୍ଟିରୁ ଜନପ୍ରିୟ ହେଲେହେଁ ବିଷୟବସ୍ତୁ ଦୃଷ୍ଟିରୁ ସେତେ ପରିଚିତ ପରି ଜଣାଯାଏ ନାହିଁ । ଏପରିକି, ଏହା ଯେ ପରସ୍ପରଠାରୁ ପୃଥକ୍ ଅଥଚ ବିଷୟବସ୍ତୁସୂତ୍ରରେ ଗ୍ରଥିତ ଦୁଇଟି ସଂସ୍କୃତ କାବ୍ୟର ଭାବାନୁବାଦର ପରିଣତି, ଏହା ହୁଏତ ସାଧାରଣ ପାଠକ ଜାଣିବାର ସୁଯୋଗ ପାଇନାହାନ୍ତି । ସଂକ୍ଷେପରେ କହିବାକୁ ଗଲେ 'ଇଚ୍ଛାବତୀ' ଧନଞ୍ଜୟଙ୍କର ଦଶଛାନ୍ଦବିଶିଷ୍ଟ ଗୋଟିଏ ଖଣ୍ଡକାବ୍ୟ । ଏହାର ମୂଲ୍ୟ କଳନା କରିବାକୁ ହେଲେ ଅନ୍ୟ କେତେକ ଆନୁଷଙ୍ଗିକ ତଥ୍ୟର ଅବତାରଣା ଏକାନ୍ତ ଆବଶ୍ୟକ ।

'ଇଚ୍ଛାବତୀ'ର ପରିକଳ୍ପନା ଦୁଇଟି 'ପଞ୍ଚାଶିକା' ଉପରେ ପ୍ରତିଷ୍ଠିତ; ଗୋଟିଏ ହେଉଛି, ପୂର୍ବ ପଞ୍ଚାଶିକା ଓ ଅନ୍ୟଟି ହେଉଛି କବି ବିହ୍ଲଣ ବିରଚିତ 'ଚୌର ପଞ୍ଚାଶିକା', ଯାହାକୁ 'ଉତ୍ତର ପଞ୍ଚାଶିକା' କୁହାଯାଇପାରେ । ଏହି ପଞ୍ଚାଶିକାମାନଙ୍କର

ପରିଚୟ ଏ ମୁଖବନ୍ଧରେ ଯଥା ସ୍ଥାନରେ ଦିଆଯାଉଛି । 'ଇଚ୍ଛାବତୀ' ଦେଖ, ପ୍ରାଚୀନ ଛାନ୍ଦ ସାହିତ୍ୟରେ ଏକ ବିଶିଷ୍ଟ ଆସନ ଅଧିକାର କରେ । ଏହି କାବ୍ୟ ମଧ୍ୟରେ ଏକଶତ ସଂସ୍କୃତ ଶ୍ଳୋକବିଶିଷ୍ଟ ହୁଇଟି କ୍ଷୁଦ୍ର କାବ୍ୟ ଗର୍ଭିତ ହୋଇ ରହିଛି । ସେହି ଶ୍ଳୋକ-ଗୁଡ଼ିକର ସ୍ୱଚ୍ଛାନୁବାଦଛଳରେ କାବ୍ୟଟି ଗଢଣୀଳ ହୋଇ ଉଠିଛି, ଯଦଓ କବିଙ୍କର ସର୍ଜନଶୀଳ—ପ୍ରତିଭା ସେଇ ଅନୁସରଣ ମାଧ୍ୟମରେ ସୁଦ୍ଧା ସ୍ୱକୀୟତା ପ୍ରଦର୍ଶନ କରିବାକୁ ଉଦ୍ୟତ ।

କାବ୍ୟ-ବିଭାଗ :—

ସମଗ୍ର ଇଚ୍ଛାବତୀ କାବ୍ୟ ମୂଳତଃ ତିନିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଭାଗରେ, ମୂଳରୁ ପଞ୍ଚମ ଛାନ୍ଦ ଶେଷ ପର୍ଯ୍ୟନ୍ତ, ଦ୍ୱିତୀୟ ଭାଗରେ ୬ଷ୍ଠ ଛାନ୍ଦ ଆରମ୍ଭରୁ ସପ୍ତମ ଛାନ୍ଦ ଶେଷ ପର୍ଯ୍ୟନ୍ତ ଓ ତୃତୀୟ ଭାଗରେ ଅଷ୍ଟମ ଛାନ୍ଦରୁ ଶେଷ ପର୍ଯ୍ୟନ୍ତ ଗୃହୀତ ହୋଇପାରେ । ପ୍ରଥମ ପାଞ୍ଚଛାନ୍ଦରେ ଇଚ୍ଛାବତୀର ପୂର୍ବଜନ୍ମ ବୃତ୍ତାନ୍ତ, ତାହାର ବାଲ୍ୟଶିକ୍ଷା ଜନ୍ମ,ପ୍ରେମିକ ଗୁରୁ ସହିତ ଗୁରୁଶାଳାରେ ପରିଚୟ ଓ ଭାବର ଆଦାନ ପ୍ରଦାନ ବର୍ଣ୍ଣିତ । ପ୍ରସଙ୍ଗକ୍ରମେ ଚତୁର୍ଥ ଛାନ୍ଦରେ କୁମାରୀର ବିରହାକ୍ରାନ୍ତତା ଓ ପରେ କୁମାରର ଖେଦପ୍ରକାଶ ପ୍ରଭୃତି ମଧ୍ୟ ବର୍ଣ୍ଣିତ ।

ଷଷ୍ଠ ଓ ସପ୍ତମ ଛାନ୍ଦରେ ନାୟକ ଓ ନାୟିକାଙ୍କ ମୁଖରେ ଯେଉଁ ସଂସ୍କୃତ ଶ୍ଳୋକ ପ୍ରକାଶିତ, ଓଡ଼ିଆରେ ତାହାର ମର୍ମାନୁବାଦ ମାତ୍ର କରାଯାଇଛି । ଅନ୍ୟ ଭାବରେ କହିଲେ, ୬ଷ୍ଠ ଛାନ୍ଦଠାରୁ କବିଙ୍କର ବିଶେଷ କିଛି ନିଜତ୍ୱ ନାହିଁ । ନାୟକ ନାୟିକାଙ୍କର ପ୍ରଣୟାଳାପ—ମୂଳକ ପ୍ରାୟ ପଚାଶଟି ଶ୍ଳୋକ ଏବଂ ଅଷ୍ଟମଛାନ୍ଦଠାରୁ ଶେଷପର୍ଯ୍ୟନ୍ତ କୁମାରର କୁମାରୀ-ଅନୁଚିନ୍ତାମୂଳକ ପ୍ରାୟ ୫୦ଟି ଶ୍ଳୋକର ମର୍ମାନୁବାଦ ମାତ୍ର କରାଯାଇଛି । ଠାଏ ଠାଏ ମୂଳ ଶ୍ଳୋକ ସହିତ ଓଡ଼ିଆ ରଚନାର ଅତ୍ୟନ୍ତ ଭାବସାମ୍ୟ ରହିଛି । ସପ୍ତମ ଛାନ୍ଦର ଶେଷରେ କୁମାରକୁମାରୀଙ୍କର ଗୁପ୍ତପ୍ରଣୟ ରାଜାଙ୍କର ଶ୍ରୁତିଗୋଚର ହେବା ପରେ କୁମାର ପ୍ରତି ଯେଉଁ ଦଣ୍ଡାଦେଶ ପ୍ରଭୃତିର ବର୍ଣ୍ଣନା କରାଯାଇଛି ତାହା ଦକ୍ଷିଣ ଭାରତୀୟ ଓ ଉତ୍ତର ଭାରତୀୟ (ଯଥାକ୍ରମେ) 'ପୂର୍ବପୀଠିକା'

ଓ 'ବଲ୍ହଣ ଚରିତ ସୂର୍ବ ପଞ୍ଚାଶତ୍'ରେ ଥିବା ଚରିତର ଅନୁରୂପ କହିଲେ ଚଳେ । କିନ୍ତୁ ଶ୍ଳୋକଗୁଡ଼ିକରେ ସ୍ୱାତନ୍ତ୍ୟ ଦେଖାଯାଏ, ଅର୍ଥାତ୍ ପ୍ରଥମ ୫୦ଟି ଶ୍ଳୋକରେ ପ୍ରତିପାଦିତ ଚରିତ ସ୍ଥୂଳତଃ 'ସୂର୍ବପୀଠିକା' ଓ 'ବଲ୍ହଣ ଚରିତ ସୂର୍ବ ପଞ୍ଚାଶତ୍'ର ଅନୁରୂପ ହେଲେହେଁ ଶ୍ଳୋକଗୁଡ଼ିକ ସମାନ ନୁହେଁ । ଏଠାରେ ଉକ୍ତ ଗୀତ 'ସୂର୍ବ ପୀଠିକା' ପୁସ୍ତକର ପରିଚୟ ପରବର୍ତ୍ତୀ ପୃଷ୍ଠାମାନଙ୍କରେ ଦ୍ରଷ୍ଟବ୍ୟ ।

'ଗୃଢ଼ ଇଚ୍ଛାବତୀ' ନାମରେ ଓଡ଼ିଆରେ ଖଣ୍ଡିଏ ପ୍ରାଚୀନ କାବ୍ୟ ଅଛି ତହିଁରେ ମଧ୍ୟ 'କୁମାର' 'କୁମାରୀ'ଙ୍କର ବିଦ୍ୟାଭ୍ୟାସ କାଳରେ ପ୍ରୀତିର ଉଦ୍ରେକାଦି ବର୍ଣ୍ଣିତ । ଏ ସ୍ଥଳରେ 'ସୂର୍ବପଞ୍ଚାଶତ୍'ର ବୋଲି ଯେଉଁ ୫୦ଟି ଶ୍ଳୋକକୁ ନାମିତ କରାଯାଉଛି, ସେଗୁଡ଼ିକ କାହାର ରଚନା, ଜଣାଯାଏ ନାହିଁ ।

### ଶ୍ଳୋକ-କ୍ରମ :—

ପୁନାରୁ ପ୍ରକାଶିତ 'ଚୌର ପଞ୍ଚାଶିକା'ରେ ଯେଉଁ କ୍ରମରେ 'ଉକ୍ତର ପଞ୍ଚାଶତ୍'ର ଶ୍ଳୋକଗୁଡ଼ିକ ଅଛି, ଇଚ୍ଛାବତୀରେ ଅବିକଳ ସେହି କ୍ରମ ରକ୍ଷିତ ହୋଇ ନାହିଁ । ଉଦାହରଣସ୍ୱରୂପ, ଏକାଦଶ ଓ ଦ୍ୱାଦଶ ସଂଖ୍ୟକ ଶ୍ଳୋକର କ୍ରମ ଓଲଟି ଯାଇଛି । ଟିକିଏ ଅନୁଧ୍ୟାନ କଲେ ଜଣାପିବ, ଠାଏ ଠାଏ ମୂଳ ଶ୍ଳୋକ ଓ ଓଡ଼ିଆ ମର୍ମାନୁବାଦ ମଧ୍ୟରେ ଅତ୍ୟଳ୍ପ ମାତ୍ର ଅଥସାମ୍ୟ ଅଛି । ଏପରିକି, ନବମ ଓ ଦଶମ ଛାନ୍ଦରେ କବି କେବଳ ରାଜକୁମାରୀର ପ୍ରେମାନୁରକ୍ତା ଲିପିବଦ୍ଧ ନ କରି ଚରିତ୍ର— ଚରିତ୍ର ମଧ୍ୟରେ ଆଳାପ ଛଳରେ ଚରିତଟିକୁ ବିସ୍ତାରିତ କରିଅଛନ୍ତି । ଅଧିକନ୍ତୁ ମଧ୍ୟ, ଚୌର ପଞ୍ଚାଶିକାରେ ଅନ୍ତର୍ଭୁକ୍ତ ନ ଥିବା ଶ୍ଳୋକର ମର୍ମାନୁବାଦ ଦେବାକୁ ମଧ୍ୟ ଧନଞ୍ଜୟ ଚେଷ୍ଟା କରିଛନ୍ତି । ଉଦାହରଣ ସ୍ୱରୂପ, ଚୌର ପଞ୍ଚାଶିକାର ପରିଶିଷ୍ଟ ରୂପେ ଯେଉଁ କେତୋଟି ଶ୍ଳୋକ ଅଛି, (ତଦ୍‌ପର୍ବିକରଙ୍କ ସମ୍ପାଦିତ—ଚୌର ପଞ୍ଚାଶିକାର ପୃ. ୩୯ ଦ୍ରଷ୍ଟବ୍ୟ), ତହିଁରୁ ଗୋଟିଏ ହେଉଛି :—

।

ପଞ୍ଚତ୍ୱଂ ତନୁରେତୁ ଭୂତନିବହାଃ
ସ୍ୱାଂଶେ ମିଳନ୍ତୁ ଧ୍ରୁବମ୍
ଧାତସ୍ତ୍ୱାଂ ପ୍ରଣିପତ୍ୟ ନମ୍ରଶିରସା
ଯାଚେ ନିବଦ୍ଧାଞ୍ଜଳିଃ ।
ତଦ୍‌ବାପୀଷୁ ପୟଃ ତଦୀୟ ମୁକୁରେ
ଜ୍ୟୋତିସ୍ତଦୀୟାଙ୍ଗଣ-
ବ୍ୟୋମ୍ନି ବ୍ୟୋମ ତଦୀୟ ବର୍ତ୍ମନି ଧରା
ତତ୍ତାଳବୃନ୍ତେଽନିଳଃ ।
(ଓଡ଼ିଶାର ପାଠ)

ଇଚ୍ଛାବତୀରେ ଅଛି ( ପୃ. ୮୯)
ମୋର ନାହିଁ ମରଣରେ ଚିନ୍ତା
ତନୁ ପାଇବ ଯେବେ ବଞ୍ଚିନ୍ତା
ନିଜ ଅଂଶେ ଭୂତ- ଗଣ ଲୀନ ହେଉ
ମୋରେ ଏମନ୍ତ କରୁ ବିଧାତାରେ
ଦୋଷାଧୂ ।
ତା'ର ଲୀଳା ଗମନ ସରଣୀ
ତହିଁ ଯାଇ ରହୁ ମୋ ଧରଣୀ
ପ୍ରିୟା ଲାଗି ଯେବେ ଏ ପ୍ରାଣ ତେଜିବ
ତେବେ ହେବ ରସିକ-ଅଗ୍ରଣୀରେ
ଦୋଷାଧୂ ।

ଏଠାରେ ଦେଖାଯାଏ, ଉଦ୍ଧୃତ ଶ୍ଳୋକରେ ପଞ୍ଚ ମହାଭୂତରେ ନାୟକଶରୀରର ପଞ୍ଚ ମହାଭୂତ ବିଲୀନ ହେବାର ବର୍ଣ୍ଣନା କରାଯାଇଛି । କିନ୍ତୁ ଇଚ୍ଛାବତୀର ଉଦ୍ଧୃତିରେ କେବଳ ଗୋଟିଏ ଭୂତର ଅର୍ଥାତ୍ କେବଳ ପୃଥିବୀ ଅଂଶର ଉଲ୍ଲେଖ ଅଛି ।

ସେହିପରି ଲୁହେ; ପ୍ରଥମ ପାଞ୍ଚ ଛାନ୍ଦରେ 'ଇଚ୍ଛା'ର ଚରିତ ଯେଉଁଭଳି ଭାବରେ ବର୍ଣ୍ଣିତ, ତାହା ସହିତ ପୂର୍ବପୀଠିକାର ୫୦

ଶ୍ଳୋକ ଯୋଗ କରି ଦିଆଯିବା ଫଳରେ, ଠାଏ ଠାଏ ଘୋର ଅସାମଞ୍ଜସ୍ୟ ଲକ୍ଷିତ ହେଉଅଛି । ପ୍ରଥମ ପାଞ୍ଚ ଛାନ୍ଦରେ ( ଯାହାକୁ କବିଙ୍କର ପୂର୍ଣ୍ଣ ମୌଳିକ ରଚନା କୁହାଯାଇପାରେ ) ବର୍ଣ୍ଣନା କରାଯାଇଛି ଯେ, ସେ ଦୁହେଁ ଏକଇ ଗୁରୁଙ୍କ ନିକଟରେ ଅଧ୍ୟୟନ କରୁଥିଲେ ଏବଂ ଏକାନ୍ତ ଉଦ୍ୟାନରେ ସେମାନଙ୍କର ପ୍ରେମ ସମ୍ଭାଷଣାଦି ହୋଇଥିଲା ।

କବିଙ୍କ ଭାଷାରେ—

ଏମନ୍ତ ବୋଲିଣ ରମଣୀ-ରତନ
ବିବିଧ କୁସୁମ ତୋଳନ୍ତେ,
ଗୃହ କରେଣି ଗୃହେଁ ନେଇ ଅନ୍ତେ,
ଉଡ଼ ପବନେ— ଅଞ୍ଚଳ ଉରଦେଶ
ଦେଖିଲା କାନ୍ତ କୁରତେ
(ପୃ ୧୫—ପ—୧୮)

୫ମ ଛାନ୍ଦ ଶେଷରେ ଇଚ୍ଛାବତୀର ସହଚରୀ, କୁମାରଙ୍କୁ ଜେମାର ଅନ୍ତଃପୁରକୁ ନେଇ ଯାଇଛି । ସେଠାରେ ନାୟକନାୟିକାଙ୍କର ମଧୁର ଭାବରେ ବାକ୍ୟ ବିନିମୟ ହୋଇଛି । ଅଥଚ ସପ୍ତଦଶ ଶ୍ଳୋକରେ କୁହାଯାଇଛି—(ପୃ—୬୩—ଶ୍ଳୋ—୧୭)

"ତ୍ୱଦ୍ରୂପସନ୍ଦର୍ଶନ ମାଶୁ ଦେହି"
ଅର୍ଥାତ୍, ମତେ ଶୀଘ୍ର ତୁମ ରୂପର ଦର୍ଶନ ଦିଅ ।

କଥା ହେଉଛି—ମୂଳ ଚରିତରେ ଅଛି, ଗୁରୁଭାବରେ ବିହ୍ଲଣ ନିଯୁକ୍ତ ହୋଇଥିଲେ ଏବଂ ଗୋଟିଏ ଜବନିକାର ଉଭୟ ପାର୍ଶ୍ୱରେ, ପରସ୍ପର ଦର୍ଶନର ସୁଯୋଗରୁ ବଞ୍ଚିତ ହୋଇ ଗୁରୁ ଶିଷ୍ୟାଙ୍କୁ ଶିକ୍ଷା ଦାନ କରୁଥିଲେ । ସେ ଭଳି ଅବସ୍ଥାରେ ଗୁରୁଙ୍କର ପ୍ରେମନିବେଦନ ଏବଂ ଶିଷ୍ୟାଙ୍କର ପ୍ରେମମୟ ଓ ପାଣ୍ଡିତ୍ୟ—ବିଳସିତ ଉତ୍ତର ଅବଲମ୍ବନରେ ଏ କାବ୍ୟ ଗର୍ଭିତ ‘ଚୌର ପଞ୍ଚାଶତ୍’ ରଚିତ ହୋଇଥିବା

ସମ୍ଭବ । ସୁତରାଂ, ଏଠାରେ ପ୍ରେମିକପ୍ରେମିକାଙ୍କର ଦର୍ଶନ—ଭଙ୍ଗୀ କରିବା ଯଥାର୍ଥ ବୋଧ ହେଉଛି । କିନ୍ତୁ ଇଚ୍ଛାବତୀର ମୂଳସ୍ତ୍ରୋତ 'ଗୁପ୍ତ ଇଚ୍ଛାବତୀ'ର ବିଷୟ ଅନୁସାରେ ହୋଇଥିବାରୁ, ତହିଁରେ ସେ ଦୁହିଙ୍କର ଅବାଧ ମିଳନ ଆଦୌ ଅସ୍ୱାଭାବିକ ହୋଇ ନାହିଁ । ସେହି ଚରିତ ସଙ୍ଗେ ଏଇ ଜନନିକାହାଣୀ ପରମ୍ପରାଠାରୁ ନିସୃତ ପ୍ରେମିକପ୍ରେମିକାଙ୍କ ପ୍ରେମ—ସମ୍ଭାଷଣର ଚରିତମୂଳକ ଖଣ୍ଡକାବ୍ୟ ଯୋଗ କରି ଦିଆ ଯିବାରୁ ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗର ଅସାମଞ୍ଜସ୍ୟ ବାରି ହୋଇ ପଡ଼ୁଛି ।

ସେ ଯାହାହେଉ, ଏହା କାବ୍ୟଗଠନ-କୌଶଳଦୃଷ୍ଟିରୁ ମଧ୍ୟ ଓଡ଼ିଆ ସାହିତ୍ୟରେ ଅଭିନବ ।

ଚୌର ପଞ୍ଚାଶିକା ପ୍ରେମିକତାର ପ୍ରକାଶ ଦୃଷ୍ଟିରୁ ସଂସ୍କୃତ ସାହିତ୍ୟରେ ମଧ୍ୟ ବିଶିଷ୍ଟ ସ୍ଥାନ ଅଧିକାର କରେ । କେତେକ ସମାଲୋଚକଙ୍କ ମତରେ, କବି ବିହ୍ଲଣ କାଳିଦାସଙ୍କର କାନ୍ତ-କୋମଳ-ପଦାବଳୀର ଜଣେ ଉପାସକ । ସୁତରାଂ, ପ୍ରେମିକର କୋମଳ ଭାବ ପ୍ରକାଶ କରିବାପାଇଁ ସେ ଯେଉଁ କମ୍ର-କବିତ୍ୱ-କୌଶଳ ପ୍ରଦର୍ଶନ କରିଛନ୍ତି, ତାହା ଏକାନ୍ତ ପ୍ରଶଂସନୀୟ । ଯଥାର୍ଥ ଭାବରେ କହିବାକୁ ଗଲେ, ଧନଞ୍ଜୟ ଭଞ୍ଜଙ୍କର କବିତାରେ ପଦ ସଂଯୋଜନାର ସେଇ ଲାଳିତ୍ୟ, ଗାମ୍ଭୀର୍ଯ୍ୟ, ମାଧୁର୍ଯ୍ୟ ଓ ସୌକୁମାର୍ଯ୍ୟ ରକ୍ଷିତ ହୋଇ ପାରି ନାହିଁ ।

## ଚୌର ପଞ୍ଚାଶିକା.—

ସଂସ୍କୃତରେ 'ଚୌର ପଞ୍ଚାଶିକା' ନାମରେ ଖଣ୍ଡିଏ କବିତା ପୁସ୍ତକ ଦେଖାଯାଏ । ନାମରୁ ଜଣାଯାଏ, ଏଥିରେ ପଚାଶ (୫୦)ଟି ମାତ୍ର ଶ୍ଳୋକ ଅଛି । 'ବିହ୍ଲଣ' ଏହାର ରଚୟିତା । ଅନେକ ଦିନ ତଳେ ମୂଳଶ୍ଳୋକ ଗୁଡ଼ିକ ଓଡ଼ିଆ ଅକ୍ଷରରେ ପ୍ରକାଶ ପାଇଥିଲା । 'ଚୌର ପଞ୍ଚାଶିକା'ର ଅନ୍ୟ ନାମ ହେଉଛି 'ଚୌରୀସୁରତ ପଞ୍ଚାଶିକା',

“ବିଲ୍ହଣ ପଞ୍ଚାଶିକା” ଓ “ଶଶିକଳା ପଞ୍ଚାଶିକା” । କିନ୍ତୁ ସାଧାରଣରେ ଏହା 'ଚୌରପଞ୍ଚାଶିକା' ନାମରେ ଖ୍ୟାତ । କବି 'ବିଲ୍ହଣ'ଙ୍କ ରଚିତ ଅନ୍ୟାନ୍ୟ ଗ୍ରନ୍ଥ ହେଉଛି 'କର୍ଣ୍ଣ ସୁନ୍ଦରୀ ନାଟକ' 'ବିଲ୍ହଣ ଚରିତ', 'ବିକ୍ରମାଙ୍କ ଚରିତ', ଓ 'ବିଲ୍ହଣୀୟ କାବ୍ୟ', 'ବିଲ୍ହଣୀୟ କାବ୍ୟ' ହୁଏତ 'ବିଲ୍ହଣଚରିତ' ଠାରୁ ଅଭିନ୍ନ ହୋଇପାରେ । ସେ ଯାହା ହେଉ, 'ଚୌର ପଞ୍ଚାଶିକା'ର ରହସ୍ୟ ବୁଝିବାପାଇଁ 'ବିଲ୍ହଣ ଚରିତ' ବିଶେଷ ସହାୟକ । କାରଣ ତହିଁରୁ କବିଙ୍କ ଜୀବନୀ ସମ୍ପର୍କରେ ଜ୍ଞାନ ଲାଭ ହୁଏ ଏବଂ 'ଚୌର ପଞ୍ଚାଶିକା' ରେ ତାଙ୍କର ପ୍ରେମାନୁଭୂତିର ଅନୁସ୍ମରଣ ହିଁ ପ୍ରକାଶ ଲାଭ କରିଛି ।

'ଇଚ୍ଛାବର୍ତ୍ତୀ' କାବ୍ୟରେ ପ୍ରାୟ ଏକଶହ ଶ୍ଳୋକ ସନ୍ନିବେଶିତ ହୋଇଛି । ତହିଁରୁ, ବିଖ୍ୟାତ 'ଚୌର ପଞ୍ଚାଶିକା'ରେ ଯେଉଁ ପଚିଶଟି ଶ୍ଳୋକ ଦେଖାଯାଏ, (ଯେଉଁ ଶ୍ଳୋକମାନଙ୍କର ପ୍ରଥମ ପଦ ହେଉଛି 'ଅଦ୍ୟାପି' ବା 'ଅଦ୍ୟ') ସେହି ପଚିଶଟି ଶ୍ଳୋକ ଅଷ୍ଟମ ଛାନ୍ଦଠାରୁ ସନ୍ନିବେଶିତ ହୋଇଛି । ତାହା ପୂର୍ବରୁ ଅର୍ଥାତ୍ ୬ଷ୍ଠ ଓ ୭ମ ଛାନ୍ଦରେ ଅନ୍ୟ ଯେଉଁ ପଞ୍ଚାଶଟି ଶ୍ଳୋକର ସମାବେଶ ଦେଖାଯାଏ, ସେଗୁଡ଼ିକର ମୂଳ ଅନୁସନ୍ଧେୟ । 'ଚୌର ପଞ୍ଚାଶିକା'ରେ କେବଳ କବିଙ୍କର ପ୍ରେମାନୁସ୍ମରଣ ଲିପିବଦ୍ଧ ହୋଇଥିବାରୁ, ନାୟିକା ସଙ୍ଗେ ତାଙ୍କର ଲୀଳା ବିଳାସକୁ ଭିତ୍ତିକରି ଅନ୍ୟ ପଚିଶଗୋଟି ଶ୍ଳୋକ ରଚିତ ହେବାରେ କିଛି ବିଚିତ୍ରତା ନାହିଁ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଭାରତରେ 'ବିଲ୍ହଣ ଚରିତ ପୂର୍ବ ପଞ୍ଚାଶତ୍' ଓ 'ପୂର୍ବପୀଠିକା' ନାମରେ ଯେଉଁ ଦୁଇଟି କାବ୍ୟ ମିଳେ, ସେ ଦୁଇଟିରେ ଥିବା ଶ୍ଳୋକ-ମାନଙ୍କ ସହିତ 'ଇଚ୍ଛାବର୍ତ୍ତୀ'ରେ ଥିବା “ପୂର୍ବ ପଞ୍ଚାଶତ୍” ରୁଟଘ ବିବେଚ୍ୟ ଶ୍ଳୋକମାନଙ୍କର କୌଣସି ସାମ୍ୟ ନାହିଁ ।

ପୁନା ଓରିଏଣ୍ଟାଲ୍ ବୁକ୍ ଏଜେନ୍ସି ପକ୍ଷରୁ ଉଦ୍‌ପଣ୍ଡୀକର୍ ମହୋଦୟଙ୍କଦ୍ୱାରା ସମ୍ପାଦିତ ହୋଇ ଯେଉଁ “ଚୌର ପଞ୍ଚାଶିକା” ପ୍ରକାଶ ପାଇଛି ତହିଁରେ ଉପର ସୂଚିତ ଦୁଇଟିଯାକ 'ପୂର୍ବ ପଞ୍ଚାଶିକା'

ର ସମାବେଶ କରାଯାଇଛି । ତଦ୍‌ପର୍ଣ୍ଣିକର୍ ମହୋଦୟ ଦର୍ଶାଇଛନ୍ତି ଯେ, 'ବିଲ୍‌ହଣଚରିତ'ର ଉତ୍ତର ଭାରତୀୟ ପାଠ ଠାରୁ ଦକ୍ଷିଣ ଭାରତୀୟ ପାଠ ସମ୍ପୂର୍ଣ୍ଣ ଭିନ୍ନ । 'ପୂର୍ବପୀଠିକା'ରେ ପ୍ରାୟ ୭୪ଟି ଶ୍ଲୋକ ଅଛି ଓ ତନ୍ମଧ୍ୟରେ ପୁଣି ପ୍ରାୟ ୨୦ଟି ଶ୍ଲୋକ ଯୁକ୍ତହୋଇ ଥିବାର ଅନୁମିତ ହୁଏ । ତେଣୁ 'ପୂର୍ବପୀଠିକା'ର ମୋଟ ଶ୍ଲୋକ ସଂଖ୍ୟା ପ୍ରାୟ ୧୦୦ (ଏକଶତ) କହିଲେ ଚଳେ । କିନ୍ତୁ ଦକ୍ଷିଣଭାରତୀୟ 'ପୂର୍ବ-ପଞ୍ଚାଶତ୍'ରେ କବିଙ୍କର ଜୀବନୀ ଯେଉଁଭଳି ଲିପିବଦ୍ଧ ହୋଇଛି ଉତ୍ତରଭାରତୀୟ "ପୂର୍ବପୀଠିକା" ସହିତ ତାହାର ସମ୍ପର୍କ ନାହିଁ । ପୁଣି ଦକ୍ଷିଣ ଭାରତୀୟ ପାଠକୁ 'ପଞ୍ଚାଶତ୍' ନାମରେ ନାମିତ କରାଯାଇ ଥିଲେ ହେଁ ତନ୍ମଧ୍ୟରେ ପ୍ରକୃତରେ ୧୦୦ ଶ୍ଲୋକ ପରିଦୃଷ୍ଟ ହୁଏ । କିନ୍ତୁ 'ଇଚ୍ଛାବର୍ତ୍ତ"ରେ ମୁଦ୍ରିତ 'ଚୌର ପଞ୍ଚାଶିକା'ର 'ପୂର୍ବପୀଠିକା' ରୂପେ ଷଷ୍ଠ ଛନ୍ଦ ଓ ସପ୍ତମ ଛନ୍ଦରେ ଯେଉଁ ପଚିଶଟି ଶ୍ଲୋକ ଦେଖାଯାଏ, ତାହା ଉତ୍ତରଭାରତୀୟ ଓ ଦକ୍ଷିଣଭାରତୀୟ 'ପୂର୍ବପୀଠିକା' ଓ ଦକ୍ଷିଣ ଭାରତୀୟ "ବିଲ୍‌ହଣ ଚରିତ ପୂର୍ବ ପଞ୍ଚାଶତ୍" ଠାରୁ ଭିନ୍ନ ।

## 'ଚୌର-ପଞ୍ଚିକା'—

ଶ୍ରୀଯୁକ୍ତ ତଦପର୍ଣ୍ଣୀକର୍‌ଙ୍କର ଆଲୋଚନାରୁ ଜଣାଯାଏ, 'ଚୌରପଞ୍ଚାଶିକା' ନାମରେ ଯେଉଁ ଏକାଧିକ ଖଣ୍ଡକାବ୍ୟ ଦେଖାଯାଏ ସେମାନଙ୍କ ମଧ୍ୟରେ ବିସ୍ମୟକର ପାର୍ଥକ୍ୟ ପରିଲକ୍ଷିତ ହୁଏ । ସେ ଆଲୋଚନା କରି ଦେଖାଇ ଛନ୍ତି ଯେ, ସେ ନିଜେ ପରୀକ୍ଷା କରିଥିବା ଛଗୋଟି 'ଚୌର ପଞ୍ଚାଶିକା'ର ୧୫୦ ଶ୍ଲୋକ ମଧ୍ୟରେ କେବଳ ୫ଟି ଶ୍ଲୋକ ସମାନ । ସେହି ପାଞ୍ଚ ଶ୍ଲୋକ ହେଉଛି—ଅଷ୍ଟମ ଛନ୍ଦର ପ୍ରଥମ, ଦ୍ୱିତୀୟ, ଏକାଦଶ, ଦ୍ୱାଦଶ ଓ ଦଶମଛନ୍ଦର ଏକବିଂଶ ଶ୍ଲୋକ ।

ଏହି ବିଖ୍ୟାତ ପଞ୍ଚାଶିକା ବା ୫୦ଟି ଶ୍ଲୋକ ଉତ୍ତର ଭାରତୀୟ ପାଠରୂପେ ଅଭିହିତ ହୋଇପାରେ, କାରଣ ଦକ୍ଷିଣଭାରତୀୟ

ପାଠରେ ଏହି 'ପଞ୍ଚାଶିକାର' ୫୦ଟି ଶ୍ଳୋକ ପରେ ଅଧିକ କେତୋଟି ଶ୍ଳୋକ ଅଛି । ଇଚ୍ଛାବଶତରେ ସେହି ଶ୍ଳୋକଗୁଡ଼ିକ ସମାବେଶିତ ହୋଇ ନ ଥିଲେ ହେଁ ଓଡ଼ିଶାରେ ସେଗୁଡ଼ିକ ମଧ୍ୟରୁ କେତୋଟି ଶ୍ଳୋକ ପଣ୍ଡିତମଣ୍ଡଳୀରେ ସ୍ୱୀକୃତ ରହିଛି । ଦକ୍ଷିଣଭାରତୀୟ ପାଠରେ ଯେପରି ପଞ୍ଚାଶ ଶ୍ଳୋକ ପରେ ଅଧିକ କେତୋଟି ଶ୍ଳୋକ ଦେଖାଯାଏ, ସେହିପରି କାଶ୍ମୀରରେ ମିଳୁଥିବା ପଞ୍ଚାଶିକାରେ ଅଧିକ ଅନେକ ଶ୍ଳୋକ ଅଛି ।

'ଚୌର ପଞ୍ଚାଶିକା'ର ଶ୍ଳୋକଗୁଡ଼ିକ ବାସ୍ତବ ଘଟଣା ଉପରେ ପ୍ରତିଷ୍ଠିତ କି ନୁହେଁ, ଏ ସମ୍ପର୍କରେ ନାନା ପଣ୍ଡିତଙ୍କର ନାନାମତ । ଜିଜ୍ଞାସୁ ପାଠକ 'ତଦ୍‌ପତ୍ରୀକର ମହୋଦୟଙ୍କ ସମ୍ପାଦିତ ପୁସ୍ତକର ମୁଖବନ୍ଧ ଏଥିଲାଗି ପାଠ କରି ପାରନ୍ତି । ବର୍ତ୍ତମାନ ପ୍ରସଙ୍ଗରେ ଏହି ସମସ୍ୟାର ଆଲୋଚନା ଓ ବିବରଣୀ ଅପ୍ରାସଙ୍ଗିକ ହେବ । ଏ ସମ୍ପର୍କରେ ଅଳ୍ପ ଗୋଟିଏ ତଥ୍ୟର ସୂଚନା ଦେବା ଏକାନ୍ତ ପ୍ରାସଙ୍ଗିକ ମନେହୁଏ । ତାହା ହେଉଛି 'ବିଲ୍ହଣ ପଞ୍ଚାଶତ୍ ପ୍ରତ୍ୟୁତ୍ତରମ୍' ( ବିଲ୍ହଣଙ୍କ ପଞ୍ଚାଶ ଶ୍ଳୋକର ଉତ୍ତର ) । ଏହାର ଅନ୍ୟ ନାମ ହେଉଛି, "ନରେନ୍ଦ୍ର ତନୟା ସଞ୍ଜଳ୍ପିତମ୍" । ଏଥିରେ ଠିକ୍ ବିଖ୍ୟାତ ପଞ୍ଚାଶିକା ଭଳି 'ଅଦ୍ୟାପି' ଶବ୍ଦରେ ଆରମ୍ଭ ହୋଇଥିବା ଶ୍ଳୋକ-ମାନଙ୍କରେ ରାଜକୁମାରୀର ବିରହାକୁଳତା ଅଭିବ୍ୟକ୍ତ ହୋଇଛି । ରଚନାର ଲାଳିତ୍ୟ, ସୂକ୍ଷ୍ମତା, ସୌକୁମାର୍ଯ୍ୟ ଓ ଶୃଙ୍ଗାର ଭାବଶାଳିତାରେ ରାଜକୁମାରୀର ଏହି ପଞ୍ଚାଶିକା ବିଖ୍ୟାତ ପଞ୍ଚାଶିକାଠାରୁ କୌଣସି ଗୁଣରେ କମ୍ ନୁହେଁ ।

ବିଲ୍ହଣ କାଶ୍ମୀରଠାରୁ ସୁଦୂର ଦାକ୍ଷିଣାତ୍ୟର ବହୁ ଅଞ୍ଚଳ ପରି-ଭ୍ରମଣ କରି, ବହୁ ରାଜସମ୍ମାନ ଲାଭ କରିଥିବା ଏକ ଐତିହାସିକ ଘଟଣାରୂପେ ସ୍ୱୀକୃତ ହୋଇଥାଏ । କେତେକଙ୍କ ମତରେ, କାଶ୍ମୀରର ବିଖ୍ୟାତ ବିଦ୍ୟାପତି ବିଲ୍ହଣ ଓ ଚୌର ପଞ୍ଚାଶିକା'ର କବି ଦୁଇଜଣ

ବ୍ୟକ୍ତ । କିନ୍ତୁ ଏ ପ୍ରସଙ୍ଗରେ ସେ ସବୁ ମତମତାନ୍ତରର ଅବତାରଣା ଅବଶ୍ୟକ ନୁହେଁ ।

ଭାରତର ବିଭିନ୍ନ ଭାଷାରେ 'ଏହି ପଞ୍ଚାଶିକାର ପ୍ରଭାବ ପଡ଼ିଛି । ଗୁଜରାଟୀ 'ଶଶିକଳା ବିରହପ୍ରତାପ' ଏହାର ଉପରେ ପ୍ରତିଷ୍ଠିତ କାରଣ ନାୟିକାର ନାମ 'ଶଶିକଳା' ବୋଲି କେତେକଙ୍କ ଲେଖାରୁ ଜଣାଯାଏ । ଜୈନାଚାର୍ଯ୍ୟ ଶ୍ରୀ ଜିନାଚାର୍ଯ୍ୟ ଅପଭ୍ରଂଶ ସାହିତ୍ୟରେ ଏହି ଚରିତ ପରିବେଷଣ କରିଛନ୍ତି । ଶିବାଜୀଙ୍କର ସମସାମୟିକ ବିଠଲ୍ ନାମକ ଜଣେ ପଣ୍ଡିତ ଏହାକୁ ମରାଠୀରେ ଲେଖିଛନ୍ତି । ଏପରି କି Sir Edwin Arnold ଇଂରାଜୀରେ ଏହାର ଏକ ପ୍ରକାର ମର୍ମାନୁବାଦ କରିଛନ୍ତି ।

ଏହି ଆଲୋଚନାରେ ଶ୍ରୀଯୁକ୍ତ ତିଦଯଣୀ କରିଙ୍କ ସଂସ୍କରଣର ବିଶେଷ ସାହାଯ୍ୟ ଗ୍ରହଣ କରାଯାଇଛି । ସେ ଯେଉଁ ପଚାଶଟି ଶ୍ଳୋକକୁ 'ଚୌର ପଞ୍ଚାଶିକା' ରୂପେ ସମ୍ପାଦନା କରିଛନ୍ତି, ତାହାକୁ ଉତ୍ତର ଭାରତୀୟ ପାଠ ବୋଲି ସେ କହିଛନ୍ତି । ଏହି ପାଠ ସହିତ 'ଲକ୍ଷାବତୀ'ର ଅଷ୍ଟମ ନବମ ଦଶମ ଛାନ୍ଦରେ ସମାବେଶିତ ଶ୍ଳୋକର ପ୍ରାୟ ପୁରାପୁରି ସାମ୍ୟ ଅଛି । ପ୍ରଭେଦ ମଧ୍ୟରେ—(କ)—କେତେକ ସ୍ଥଳରେ ଶ୍ଳୋକମାନଙ୍କର ଅନୁକ୍ରମିକତାରେ ପାର୍ଥକ୍ୟ ଅଛି, ଯେପରିକି ଏଗାର ଓ ବାର ସଂଖ୍ୟକ ଶ୍ଳୋକର କ୍ରମ ଓଲଟ ପାଲଟ ହୋଇଛି. (ଖ)—ଅନ୍ୟ କେତେକ ସ୍ଥଳରେ କେତେକ ଶବ୍ଦର ବିଭିନ୍ନତା ପରିଲକ୍ଷିତ ହୁଏ— ପାଦଟୀକାରେ ସେଗୁଡ଼ିକ ସୂଚିତ କରାଯାଇଛି ।

ଏ ପୁସ୍ତକ ସମ୍ପାଦନାରେ ଓଡ଼ିଶା ରାଜ୍ୟସରକାରଙ୍କ ଭୁବନେଶ୍ବରସ୍ଥିତ ସଂଗ୍ରହ-ଶାଳାର (ମ୍ୟୁଜିଅମ୍) ପୋଥିଟିକୁ ମୁଖ୍ୟ ଭାବରେ ଗ୍ରହଣ କରାଯାଇଛି । ଓଡ଼ିଶା-ସାହିତ୍ୟ-ଏକାଡେମୀ ଗଠିତ ହେବା ପୂର୍ବରୁ ତତ୍କାଳୀନ ଶିକ୍ଷାବିଭାଗର ସେକ୍ରେଟାରୀ ଶ୍ରୀଯୁକ୍ତ ପ୍ରାଣନାଥ ମହାନ୍ତି ଏମ୍. ଏ., ଆଇ. ଏ. ଏସ୍.ଙ୍କ ସଭାପତିତ୍ବରେ ମିଉଜିଅମ୍‌ର ପୁସ୍ତକ ସମ୍ପାଦନାଦି ସଂପର୍କରେ ଏକ କମିଟି ଗଠିତ

ହୋଇଥିଲା ଏବଂ ସେହି କମିଟି ମତେ ଏ ପୁସ୍ତକ ସମ୍ପାଦନାର ଦାୟିତ୍ୱ ଦେଇଥିଲେ । ପୋଥିଟିର ଅବସ୍ଥା ଭଲ ନ ଥିବାରୁ ନକଲ ହେଲାବେଳେ ତାହା ବହୁ ପ୍ରମାଦପୂର୍ଣ୍ଣ ହୋଇଥିଲା । ବିଶ୍ୱବିଦ୍ୟାଳୟରୁ ପ୍ରାପ୍ତ ଖଣ୍ଡେ ପୋଥିର ନକଲ ଏବଂ ପୁନାରୁ ପ୍ରକାଶିତ ଶ୍ରୀଯୁକ୍ତ ତଦ୍‌ପର୍ଣ୍ଣୀକାରଙ୍କ ଖଣ୍ଡିଏ 'ଚୌର ପଞ୍ଚାଶିକା', ଏ ଦୁଇଟିର ସାହାଯ୍ୟରେ କାବ୍ୟଟିର ସମ୍ପାଦନା କରାଯାଇଛି । ବିଶ୍ୱବିଦ୍ୟାଳୟର ପୋଥିଟି ଅପୂର୍ଣ୍ଣ ହେଲେ ମଧ୍ୟ ମିଉଜିଅମ୍ ପୋଥିରେ ନଷ୍ଟ ହୋଇ ଯାଇଥିବା କେତୋଟି ପଂକ୍ତି ପୂରଣରେ ତାହା ସାହାଯ୍ୟ କରିଛି । ଯେଉଁ ସ୍ଥଳରେ ମୂଳ ପୋଥି ସହିତ ବିଶ୍ୱବିଦ୍ୟାଳୟ ପୋଥିର କିମ୍ବା ପୁନା ପ୍ରକାଶିତ 'ଚୌର ପଞ୍ଚାଶିକା'ର ପାଠରେ ପାର୍ଥକ୍ୟ ଲକ୍ଷିତ ହୋଇଛି, ସେଠାରେ ପାଦଟୀକାଦ୍ୱାରା ତାହା ସୂଚାଇ ଦିଆ ଯାଇଛି । ପୁଣି ଅର୍ଥର ସେ ଭଳି ଗୁରୁତର ପାର୍ଥକ୍ୟ ଘଟାଉ ନ ଥିବା କେତେକ କବିତାଂଶର ପାଠାନ୍ତର ବିଶ୍ୱବିଦ୍ୟାଳୟ ପୋଥିରେ ଲକ୍ଷିତ ହେବାରୁ ପରିଶିଷ୍ଟରେ ସେ ସବୁ ଦିଆଯାଇଛି ।

ସଂସ୍କୃତ ଅନଭିଜ୍ଞ ପାଠକଙ୍କର ଅବଗତିର ସୌକର୍ଯ୍ୟ ଲାଗି ସଂସ୍କୃତ ଶ୍ଳୋକଗୁଡ଼ିକର ଅନ୍ୱୟ ଓ ଅର୍ଥ କରାଯାଇ ଏଥିରେ ସନ୍ନିବେଶିତ କରାଯାଇଛି । ଏହାଦ୍ୱାରା ମୂଳଶ୍ଳୋକର ମର୍ମ ଓ ଓଡ଼ିଆ କବିତାର ମର୍ମ ଏବଂ ତହିଁ ସଙ୍ଗେ ସଙ୍ଗେ ସର୍ଜନମୂଳକ ଧନଞ୍ଜୟଙ୍କ ପ୍ରତିଭାର ପ୍ରକାଶ କେଉଁଠାରେ ଓ କେତେ ପରିମାଣରେ ହୋଇଛି, ତାହା ସହଜରେ ବୁଝି ହେବ ।

ପାଦଟୀକାରେ ମିଉଜିଅମ୍‌ର ପୋଥିଟିକୁ 'କ' ରୂପେ, ବିଶ୍ୱବିଦ୍ୟାଳୟର ପୋଥିଟିକୁ 'ଖ' ରୂପେ ଏବଂ ପୁନା ପ୍ରକାଶିତ ପୋଥିଟିକୁ 'ଗ' ରୂପେ ଚିହ୍ନିତ କରାଯାଇଛି ।

ଓଡ଼ିଶା ମ୍ୟୁଜିଅମରେ ଥିବା ପୋଥି ସାହାଯ୍ୟରେ 'ଇଚ୍ଛାବତୀ'ର ଆଲୋଚନା କରି ପଣ୍ଡିତ ନୀଳମଣି ମିଶ୍ର ଦର୍ଶାଇଛନ୍ତି ଯେ, 'ଚୌର-

ପଞ୍ଚାଶିକା'ର ଶ୍ଳୋକଗୁଡ଼ିକ ଇଚ୍ଛାବତୀର ଷଷ୍ଠ ଓ ସପ୍ତମ ଛାନ୍ଦରେ ସନ୍ନିବେଶିତ ଓ ଉତ୍ତର ପଞ୍ଚାଶତ୍ରର ଶ୍ଳୋକଗୁଡ଼ିକ ଇଚ୍ଛାବତୀର ୮ମ, ୯ମ ଓ ୧୦ମ ଛାନ୍ଦରେ ସନ୍ନିବେଶିତ । ଏ ଅନୁସାରେ ଦେଖିଲେ, ଭାରତରେ ଯେଉଁ ୫୦ଟି ଶ୍ଳୋକ 'ଚୌର-ପଞ୍ଚାଶିକା' ରୂପେ ସୁପରିଚିତ (ଯେଉଁଗୁଡ଼ିକ ଅଦ୍ୟାପି ବା ଅଦ୍ୟ ଶବ୍ଦରେ ଆରମ୍ଭ), ସେହି ଶ୍ଳୋକଗୁଡ଼ିକ ସେହି ବିଖ୍ୟାତ ନାମରେ ବୁଝାଯାଇନାହିଁ । ପ୍ରକୃତରେ, ପ୍ରଥମରେ ପ୍ରେମ ଓ ପରେ ପ୍ରେମୋତ୍କଣ୍ଠା ହେବା ସ୍ୱାଭାବିକ । ଏହି ଦୃଷ୍ଟିରୁ ଷଷ୍ଠ ଓ ସପ୍ତମ ଛାନ୍ଦର ଶ୍ଳୋକାବଳୀ ଚୌର-ପଞ୍ଚାଶିକା ରୂପେ ବା "ଚୌର-ପୂର୍ବପଞ୍ଚାଶିକା" ରୂପେ ନାମିତ ହୋଇ, ଅନ୍ୟ ତିନୋଟି ଛାନ୍ଦର ଶ୍ଳୋକଗୁଡ଼ିକ ଉତ୍ତର ପଞ୍ଚାଶତ୍ ବୋଲି ଅଭିହିତ ହେବା ଯୁକ୍ତିଯୁକ୍ତ । କିନ୍ତୁ ଭାରତରେ ସେହି ଉତ୍ତର ପଞ୍ଚାଶତ୍ ହିଁ ଚୌର-ପଞ୍ଚାଶିକା ରୂପେ ପରିଚିତ ।

ଅଧିକନ୍ତୁ ମଧ୍ୟ, ପୂର୍ବ ପଞ୍ଚାଶତ୍ର କବି କିଏ ସେ ସମ୍ପର୍କରେ ମତମତାନ୍ତର ଅଛି, କିନ୍ତୁ 'ଅଦ୍ୟାପି'—ସୂଚିତ ଚୌର-ପଞ୍ଚାଶିକାର କବି ବିଲ୍ହଣ ବୋଲି ଧରାଯାଇ ଥାଏ । କିନ୍ତୁ ମ୍ୟୁଜିୟମ୍ ପୋଥି ଦୃଷ୍ଟିରୁ ବିଖ୍ୟାତ ଚୌର ପଞ୍ଚାଶିକାର କବି ହେଉଛନ୍ତି 'ସୁନ୍ଦର ରାଜକୁମାର' । ଏହାଙ୍କର ପରିଚୟ ଏ ପର୍ଯ୍ୟନ୍ତ ଅନୁସନ୍ଧେୟ ହୋଇ ରହିଛି । ଶ୍ରୀ ମିଶ୍ର ପ୍ରସଙ୍ଗକ୍ରମେ ବନମାଳୀ ଦାସଙ୍କ 'ଗୂଢ ଇଚ୍ଛାବତୀ' ଓ ପ୍ରତାପ ରାୟଙ୍କର ଶଶିଶେଣାର ଆଲୋଚନା କରିଛନ୍ତି । ଏ ପ୍ରସଙ୍ଗରେ ସେ ଆଲୋଚନା ମଧ୍ୟ ଦ୍ରଷ୍ଟବ୍ୟ (ନବଜୀବନ, ୭ମ ବର୍ଷ ୨ୟ ସଂଖ୍ୟା ଓ ୩ୟ ସଂଖ୍ୟାର ଇଚ୍ଛାବତୀ କାବ୍ୟ ତଥା ଗୂଢ ଇଚ୍ଛାବତୀବିଷୟକ ଆଲୋଚନା) ।

ଖ୍ରୀ ୧୯୧୫ ରେ ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦ 'ବିଲ୍ହଣୀୟ କାବ୍ୟ'ର ଯେଉଁ ଅନୁବାଦ କରିଛନ୍ତି, ତାହା ଦୁଇ ଭାଗରେ ବିଭକ୍ତ ହୋଇଛି । ତାହାର ଉତ୍ତରାର୍ଦ୍ଧର ଶେଷ ଭାଗରେ ବିଖ୍ୟାତ ଚୌର-ପଞ୍ଚାଶିକାର ଶ୍ଳୋକଗୁଡ଼ିକର ଅନୁବାଦ ଦେଖିବାକୁ ମିଳେ । କାବ୍ୟଟିର ମୁଖବନ୍ଧରେ ସେ କହି ଅଛନ୍ତି ଯେ ଚୌର-ପଞ୍ଚାଶିକା ଓ

ତେଲୁଗୁ ଲିପିରେ ମୁଦ୍ରିତ ବିଲ୍ହଣ ଚରିତର ଶ୍ଳୋକଗୁଡ଼ିକ ଅନୁବାଦ କରି ଏଥିରେ ସମାବେଶ କରିଛନ୍ତି ।

ତା'ପରେ ଏ କାବ୍ୟର ଭାଷା ଓ ଛନ୍ଦ । ଧନଞ୍ଜୟଙ୍କ ସମୟର ଓଡ଼ିଆଭାଷା ଆଜିର ଭାଷାଠାରୁ ଭିନ୍ନ ଥିଲା । ଅନେକ ସ୍ଥଳରେ 'ନୀଳାଚଳ'କୁ ନୀଳାଞ୍ଚଳ ବୋଲି ଲେଖା ଅଛି । ଏଭଳି ପ୍ରମାଦ (?) ପ୍ରାୟ ସବୁ ତାଳପତ୍ର ପୋଥିରେ ଦେଖାଯାଏ । ମନେହୁଏ, ସେତେବେଳେ କଥିତ ଭାଷାରେ ଶବ୍ଦଟିର ଏ ରୂପ ହୁଏତ ଥିଲା ଏବଂ କବି ତାହାହିଁ ଗ୍ରହଣ କରିଛନ୍ତି । ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶିତ 'ଗୋପୀଚନ୍ଦନ' କାବ୍ୟରେ ପୋଥିର ଏଭଳି ପାଠକୁ ବିଶେଷ ପରିବର୍ତ୍ତନ କରାଯାଇ ନାହିଁ । 'ଶ' 'ସ' ଓ 'ଷ'ର ପ୍ରୟୋଗରେ ମଧ୍ୟ ସେତେବେଳର ସାହିତ୍ୟିକ ସ୍ୱତନ୍ତ୍ର ବିଚାର ଦାବୀ କରେ, ବହୁସ୍ଥଳରେ ହ୍ରସ୍ୱ ଓ ଦୀର୍ଘର ପ୍ରୟୋଗ ମଧ୍ୟ ଆପାତତଃ, ଆଧୁନିକ ବିଚାରରେ, ଦୁଷ୍ଟ ପ୍ରତୀତ ହୁଏ । ଏହା ଛଡ଼ା, ବର୍ତ୍ତମାନ ଆମେ ନିର୍ଦ୍ଦିଷ୍ଟ ରାଗର ନାମ ଶୁଣିଲେ ଯେଉଁ-ପରି ନିର୍ଦ୍ଦିଷ୍ଟ ସଂଖ୍ୟକ ଅକ୍ଷର-ବନ୍ଧର ପଦାବଳୀ ଚିତ୍ତପଟରେ ଅଙ୍କିତ କରି ନେଉ, ତାହା ପ୍ରାଚୀନ କାବ୍ୟ କବିତା ପ୍ରତି ପ୍ରୟୋଗ କରିବା ଠିକ୍ ନୁହେଁ । ତେବେ, ଯେଉଁ ଛନ୍ଦରେ ଅକ୍ଷର ସଂଖ୍ୟାର ପ୍ରାୟ ସର୍ବତ୍ର ସମତା ଦେଖାଯାଏ ଓ ସ୍ଥଳବିଶେଷରେ ମାତ୍ର ଗୋଟିଏ ଦୁଇଟି ବର୍ଣ୍ଣର ଅଭାବରେ ପଠନଭଙ୍ଗୀ ବିକୃତ ହୋଇ ପଡ଼େ, ସେ ସ୍ଥଳରେ, 'ବୋଲି'କୁ 'ବୋଲନ୍ତି', 'କହି' କୁ 'କହିଣ' ରୂପେ ପରିଣତ କରିବା ବିଶେଷ ଅସଙ୍ଗତ ପରି ପ୍ରତୀତ ହୁଏ ନାହିଁ । ସ୍ଥାନେ ସ୍ଥାନେ ତାହାହିଁ କରାଯାଇଛି ।

ଅନୁମିତ ହୁଏ, ଏହା ଧନଞ୍ଜୟଙ୍କର ପ୍ରାଥମିକ ଅବସ୍ଥାର ରଚନା । ଅନଙ୍ଗରେଖା ଓ ଶ୍ରୀରାମ ବିଳାସର ଆଲୋଚନା ଲାଗି 'ଇଚ୍ଛାବତୀ' ଯେତିକି ଆଲୋକପାତ କରିବ, ମଧ୍ୟଯୁଗର ସାହିତ୍ୟ ସାଧନାର ସ୍ୱରୂପ ନିରୂପଣରେ ସେତିକି ସହାୟକ ହେବ ବୋଲି ଆଶା ।

ଗୌରୀକୁମାର ବ୍ରହ୍ମା ।

# ବିଷୟ ସୂଚୀ

ପ୍ରଥମ ଛାନ୍ଦ:—ଜଗନ୍ନାଥ ବନ୍ଦନା—ଇନ୍ଦ୍ରସଭା, ଅପ୍‌ସରା ନୃତ୍ୟ, କଳାବନ୍ତ ଓ କଳାବତୀଙ୍କର ପ୍ରମତ୍ତତା—ଫଳରେ ମର୍ତ୍ତ୍ୟରେ ଜନ୍ମ ହେବା ଲାଗି ଅଭିଶାପ—

ଦ୍ୱିତୀୟ ଛାନ୍ଦ—ଭୋଜରାଜଙ୍କ ଗୃହରେ ଇଚ୍ଛାବତୀରୂପେ କଳାବତୀର ଜନ୍ମ—କପାଳୀ ମଠରେ ବିଦ୍ୟାଧ୍ୟୟନ, କଳାବନ୍ତ ଗନ୍ଧର୍ବର ମଧୁପୁର ରାଜଭବନରେ ମଧୁକରରୂପେ ଜନ୍ମ—କପାଳୀମଠରେ ଅଧ୍ୟୟନ, ଇଚ୍ଛାବତୀ ସଙ୍ଗେ ପରିଚୟ ଓ ପ୍ରଣୟ ।

ତୃତୀୟ ଛାନ୍ଦ—ଗଣେଶଚତୁର୍ଥୀଦିନ ମଧୁକର ଓ ଇଚ୍ଛାବତୀ-ଦ୍ୱାରା ଉଦ୍ୟାନରେ ପୁଷ୍ପ ଚୟନ—ପ୍ରେମର ଉନ୍ମାଦ-ମଧୁକର କଣ୍ଠରେ ଇଚ୍ଛାବତୀର ବରଣମାଳା ପ୍ରଦାନ ।

ଚତୁର୍ଥ ଛାନ୍ଦ—ଇଚ୍ଛାବତୀର ଯୌବନୋଦ୍‌ଗମ ପରେ ରାଜାଙ୍କ ଆଦେଶରେ ଅନ୍ତଃପୁର ମଧ୍ୟରେ ତାହାର ରହିବାର ବ୍ୟବସ୍ଥା—ତେଣେ ଇଚ୍ଛାବତୀକୁ ନ ଦେଖି ମଧୁକରର ବିରହ ବେଦନା । ସେହି ସମୟରେ ଇଚ୍ଛାବତୀର ଦାସୀଦ୍ୱାରା ମଧୁକରକୁ ଆଶ୍ୱାସନା ପ୍ରଦାନ ।

ପଞ୍ଚମ ଛାନ୍ଦ—ମଧୁକରର ବିରହ ଫଳରେ ମିଳନ ପିପାସା ବୃଦ୍ଧି, ଦାସୀ ସାହାଯ୍ୟରେ ଜେମାର ଅନ୍ତଃପୁରକୁ କୁମାରର ଆଗମନ ।

ଷଷ୍ଠ ଛାନ୍ଦ—ଅନ୍ତଃପୁରରେ ସମ୍ଭାଷଣ ଓ ଇଚ୍ଛାବତୀଦ୍ୱାରା ନାନା ଆଶଙ୍କା ଓ ଖେଦ ପ୍ରକାଶ ।

ସପ୍ତମ ଛାନ୍ଦ—ଅନ୍ତଃପୁରରେ ମଧୁର ମିଳନ ଓ କାଳଯାପନ ବନେ ପ୍ରହରୀଙ୍କଦ୍ୱାରା ଧୃତ ଓ ରାଜାଙ୍କ ସମ୍ମୁଖକୁ ନୀତ ତଥା ହତ୍ୟା କରିବାପାଇଁ ରାଜାଦେଶ ।

ଅଷ୍ଟମ ଛାନ୍ଦ—ବଧ ଭୂମିରେ କାମଚନ୍ଦ୍ରଲ-କୁମାରର ସୁଲଳିତ-ପଦବନ୍ଧରେ ଇଚ୍ଛାବତୀର ରୂପ ଗୁଣ ଓ ସମ୍ଭୋଗାଦି ବର୍ଣ୍ଣନା ।

ନବମ ଛାନ୍ଦ ଓ ଦଶମ ଛାନ୍ଦ—ପୂର୍ବ ଗ୍ରନ୍ଥପରି ରୂପଗୁଣାଦି ବର୍ଣ୍ଣନା ଓ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିବା । ଶେଷରେ, ନାରଦଙ୍କ ଉପସ୍ଥିତି ଓ ପ୍ରେମିକ ଯୁଗଳର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା, ରାଜାଙ୍କର ପ୍ରକୃତ ବିଷୟ-ବୋଧ ଓ ସେ ଦୁହିଙ୍କର ବିବାହ ସମର୍ଥନ-ସୁଖରେ କାଳଯାପନ ।

---

# ଇଚ୍ଛାବତୀ

## ପ୍ରଥମ ଛାନ୍ଦ

### ଶ୍ରୀ ଦୁର୍ଗାୟୈ ନମଃ

ରାଗ—ମଙ୍ଗଳ ଗୁର୍ଜ୍ଜରୀ

ଜୟ ଜୟ ନୀଳାଦ୍ରି ମଣ୍ଡନ ଗୋବିନ୍ଦ ।
ଯୋଗୀନ୍ଦ୍ର ମାନସ-ହଂସ ପରମାନନ୍ଦ ।୧।
ସାରଦା ସିନ୍ଧୁଜା ବେନି ପାଶେ ଖଟନ୍ତି ।
କର ପଦ୍ମ ଯୋଡ଼ି ଉଭା ପତଙ୍ଗ ପତି ।୨।
ଜାତୀ, ଯୂଥୀ, ମଲ୍ଲୀ ଯେ ବିବିଧ କୁସୁମ ।
ପ୍ରତ (ପଢ଼ି) ପ୍ରତ ଉପରେ ବିଶେଷ ସୁଅଭିରାମ ।୩।
ବିମୁଣ୍ଡି ଉପରେ ଶୋଭା ଦୟୂଣାଚୂଳ
ନବଘନ ନିନ୍ଦଇ ଶ୍ରୀମୁଖ ମଣ୍ଡଳ ।୪।
ରତନ ଜଡ଼ିତ ଚିତା ଲଲାଟ ଶୋଭା ।
ନିର୍ମଳ ନଭେ କି ଗ୍ରହ ମଣ୍ଡଳ ଆଭା ।୫।

ନଥିପରେ ଶୋଭିତ ଅଳକା ଆବଳୀ ।
ନୀଳ ପଦ୍ମ ବେଢ଼ି କି ଯେ ମଧୁପ ମିଳି ।୬।
ନୟନ ଯୁଗଳ କିସେ ଶ୍ୱେତ କମଳ ।
କିବା ବେନହଂସ ଖେଳେ କାଳିନ୍ଦୀ ଜଳ ।୭।
କଣ୍ଠେ ଭକ୍ତ ଅଘ ତମିର(କୁ) ମିହିର ।
ରମା ହୃଦୟ କମଳିନୀ ଦିନକର ।୮।
ଦାଉଡ଼ି ତରଙ୍ଗେ ଶୋଭା କଲା ଶ୍ରୀମୁଖ ।
ଦେଖିବା ମାତ୍ରକେ ଖଣ୍ଡେ ଅଖିଳ ଦୁଃଖ ।୯।
ସୁମନା ମଣ୍ଡନ ରମାହୃଦ ଚନ୍ଦନ ।
ଆଜ୍ଞା ହେଉ ମୋତେ ପ୍ରଭୁ ଜଗମୋହନ ।୧୦।
ରଚିବଇ ଇଚ୍ଛାବତୀ ନାମେଣ ଛନ୍ଦ ।
ରସିକଜନଙ୍କ ଏଥେ ବଢ଼ୁ ଆନନ୍ଦ ।୧୧।
ସୁରରାଜା ସୁରଗଣେ ଘେନି ସଙ୍ଗରେ ।
ପ୍ରବେଶ ହୋଇଲେ ହେମ-ଅଚଳ-ଶିରେ ।୧୨।
ନାନା ତରୁ ପୁଷ୍ପ ଭରେ ଅବନୀ ଲମ୍ବି ।
ଭୃଙ୍ଗ ପିକଗଣ ରୁତେ ହୋଇଛନ୍ତି ରଙ୍ଗି ।୧୩।
ଧୀରେ ଧୀରେ ବହଇ ମଳୟ ସମୀର,
ମଳୟଜ ଗନ୍ଧେ ପୂରେ ଅଚଳ ବର ।୧୪।
କ୍ରୀଡ଼ା କରେ କୁରଙ୍ଗ କୁରଙ୍ଗୀ ସଙ୍ଗତ ।
ନାନା ପକ୍ଷିଗଣ ତହିଁ କରନ୍ତି ରୁତ ।୧୫।
ବିବିଧ ରତ୍ନ କୁଞ୍ଜେମେ ଶୋଭେ ଅବନୀ ।
ବରଷେ ମଧୁପରାଗ କୁସୁମ ଘେନି ।୧୬।
ଚୁମ୍ବନ୍ତି ଅବନୀ ତଳେ ମତ୍ତ ଭ୍ରମର ।
ପବନେ କମ୍ପିତ କାହିଁ ତରୁ ମଣ୍ଡଳ ।୧୭।

କେତୁଠାରେ ଶୋଭିତ ଅସ୍ତମ ପ୍ରଦେଶ ।
କାହିଁ ମରକତଚୟକର ପ୍ରକାଶ ।୧୮।
କେଉଁଠାରେ କୁଙ୍କୁମ ବଜ୍ର ଯାରେ ନିର୍ମିତ ।
ବଇଡ଼ୂର୍ଯ୍ୟ ମଣିଗଣ କାହିଁ ଶୋଭିତ ।୧୯।
ତହିଁ ପାଶେ ବହୁଛନ୍ତି ସୁର ସରିତ ।
କନକ କମଳଚୟେ ଅତି ଲଳିତ ।୨୦।
ତଥି ପାଶେ କଳ୍ପତରୁ ଗଣ ଶୋଭିତ ।
ବିକାଶ କୁସୁମ ଗନ୍ଧେ ଆମୋଦ ଚିତ୍ତ ।୨୧।
ନୀଳକଣ୍ଠ ଭ୍ରମର କୋକିଳ କୁଜନ୍ତି ।
କଳ କଣ୍ଠ କଳ କଣ୍ଠୀ ସ୍ୱଜି ଖେଳନ୍ତି ।୨୨।
ସର୍ବଦା ଯହିଁରେ ଷଡ଼ ଋତୁ ବିଶ୍ରାମ ।
ଦେଖନ୍ତେ ମୁନି ହୃଦୟେ ଜାଗଇ କାମ ।୨୩।
ସେ ବନେ ମିଳିଲେ ଅପସରୀ ନିଚୟ ।
ଏକ ଆରକରେ କାନ୍ତେ ହୋଇ ଅଥୟ ।୨୪।
ତୋଳନ୍ତି ବିବିଧ ପୁଷ୍ପ କ୍ରୀଡ଼ନ୍ତି ତହିଁ ।
ଅନଙ୍ଗ ମଦରେ ନିଜ ଜ୍ଞାନ ହରାଇ ।୨୫।
ଏ ମନ୍ତେ ଆଦେଶ ଦେଲେ ସୁରରାଜନ ।
ଆସ ଚିତ୍ରରଥ ଅପସରୀ ଘେନିଣ ।୨୬।
ମନୋରମ ବାଳୀ (ଗଣ ? ) ଙ୍କର ତୁ ମେଳ ।
ଦେଖି ତା ଆନନ୍ଦ ହେବେ ସୁରମଣ୍ଡଳୀ ।୨୭।
ଆଜ୍ଞାପାଇ ସତ୍ୱରେ ସେ ଗନ୍ଧର୍ବ ପତି ।
ଘେନି ଅପସରୀ ଗଣ ମିଳେ ତଡ଼ିତ ।୨୮।
କଳାବନ୍ତୀ କଳାବତୀ କାମେ ଉଛନ୍ନ ।
ହୋଇଣ କରନ୍ତି କ୍ରୀଡ଼ା ହାରିଣ ଜ୍ଞାନ ।୨୯।

ଚିତ୍ରରଥ ଆଦେଶ ନକଲେ ଆଦର ।
ତେଜିଲେ ସନ୍ତତେ ସୁର ସଜ୍ଜନ ବର ।୩୦।
ଏମନ୍ତେ ସକଳ ସୁର ନାଗରୀଗଣ ।
ଦେଖି ହୃଷ୍ଟ ଆଜ୍ଞାଦେଲେ ସୁର ସଜ୍ଜନ ।୩୧।
ବିବିଧ ନୃତ୍ୟ କରିଣ ନାରଦମନ ।
ଅଙ୍ଗ ହରିଲେ ଜାଣିମା ଚତୁରୀ ପଣ ।୩୨।
ଶୁଣି ତା ବିବିଧ ଲୀଳା କରେ ଚତୁରୀ ।
ଉର୍ବଶୀ ମେନକା ତିଲୋତ୍ତମା କୁମାରୀ ।୩୩।
ସୁକୁମାରୀ ହରିଣୀଲୋଚନା ରତନା ।
ଘୃତାଚୀ, ସୁକାନ୍ତ, ରମ୍ଭା, ବସୁ ସୁମନା ।୩୪।
ମଦାଳସୀ ମିଶ୍ରକେଶୀ, ସ୍ୱଧା, କୁରଙ୍ଗୀ ।
ସଜନା (?) ଜୟନ୍ତା ଭଦ୍ରା ସାରଙ୍ଗ ରଙ୍ଗୀ ।୩୫।
ଏ ଆଦି ଯେତେକ ସୁରାଙ୍ଗନା ନକର !
ନୃତ୍ୟ ରଙ୍ଗେ ମୁନି ଚିତ୍ତ ହୋଏ ଅଥିର ।୩୬।
ଦେଖି କହେ ସୁରପତି ତୁମ୍ଭରୁ ଶୁଣ ।
କଳାବତୀ ନୃତ୍ୟ ହରୁ ଋଷିଙ୍କ ମନ ।୩୭।
କର ଯୁଗ ଯୋଡ଼ି କହେ ଗନ୍ଧର୍ବ ନାଥ ।
କଳାବନ୍ତୀ କଳାବତୀ ନାହାନ୍ତି ଏଥ ।୩୮।
କ୍ରୀଡ଼ା ରସରେ ମାତିଣ କାହିଁ ରହିଲେ ।
ଶୁଣି ରୋଷେ ଶଚୀପତି ଶାପ ବହିଲେ ।୩୯।
ତୁମ୍ଭେ ବେନି ଜନେ ହୁଅ ମର୍ତ୍ତ୍ୟରେ ଜାତ ।
ଜାଣି ଇନ୍ଦ୍ର ଶାପେ ହେଲେ ଅତି ଆରତ ।୪୦।
ତ୍ୱରିତେ ମିଳିଲେ ସୁରପତି ଛାମୁର ।
ପ୍ରଣାମ କରିଣ ବେନି ଯୋଡ଼ନ୍ତି କର ।୪୧।

ଭୃତ୍ୟ ଜନେ ପ୍ରଭୁ କ୍ଷମା କରୁଛ ଶ୍ରେଷ୍ଠ ।
ଶାପ ପ୍ରତିକାର ଆଜ୍ଞା ହେଉ ସୁରେଶ ।୪୨।
ଶୁଣି ଶଚୀପତି ହୋଏ ହରଷ ମନ ।
ତୁମ୍ଭେ ବେନି ଜନ୍ମଲଭ ରାଜଭବନ ।୪୩।
ଯେଣୁ ଏଥେ ରତି ରସେ ହେଲ ଉଦ୍ଧତ ।
ତେଣୁ ବେନି ଜନେ ହେଲ ବୁଦ୍ଧିହତ (?) ଚିତ୍ତ ।୪୪।
ପ୍ରେରି ରତି ରସେ ପରାଭବ ପାଇବ ।
ପୁଣି ବେନି ଜନେ ତୁମ୍ଭେ ସଙ୍ଗତ ହେବ ।୪୫।
ଶାପ ପ୍ରତିକାର ଏହୁ ଶୁଣ ତୁମ୍ଭର ।
କହି ଏନେ ଖେଚରେ ଆସ ଅମର ପୁର ।୪୬।
ନୀଳାଦ୍ରି ନାଥଙ୍କ ପାଦପଙ୍କଜ ଚିନ୍ତ ।
ନୃପ ଧନଞ୍ଜୟ ଭଞ୍ଜ ଆନନ୍ଦ ମତ ।୪୭।

—o—

# ଦ୍ୱିତୀୟ ଛାନ୍ଦ

## ରାଗ—ବଙ୍ଗଳା ଶ୍ରୀ

ଶୁଣ ହେ ସୁଜନେ ଏଥୁ ଅନନ୍ତରେ
ଇନ୍ଦ୍ର ଶାପେ ବେନି ଜନ ।
ଅତି ଦୁଃଖମନେ ମର୍ତ୍ତ୍ୟରେ ଜନମ
ଲଭିଲେ ଆସି ବହନ । ୧
ଅବନ୍ତୀ ପୁରେ ଯେ— ଜସ୍ୱଜ ନନ୍ଦିନୀ
ହେଲ ମୃଗାଙ୍କ ବଦନୀ
ଦିନୁ ଦିନ ସେ ବ— ଢ଼ଇ ସୁକୁମାରୀ
ଯେସନେ ହେମ ରଜନୀ । ୨

କେତେ ଦିନ ଅନ୍ତେ   ନୃପ ବୀରବର ।
ହକାରି ଦ୍ୱିଜ ତତତ ।
ନାନା ଉପଚ୍ଚର   ବିଧିକରି ନାମ
ଦେଲେ ତାର 'ଇଚ୍ଛାବତୀ' । ୩
ନବୀନ ବାଳା କୁ—   ମାସ୍ୱି ସଙ୍ଗେ ଘେନ
କରେ ନାନା ରଙ୍ଗେ ଲୀଳା ।
କେତେ ଦିନ ଅନ୍ତେ   'କପାଳୀ ମଠ'କୁ
ପଠନେ ଗଲା ଅବଳା । ୪
ସଖା ଘେନି ସଙ୍ଗେ   ବାଟିଲେ ଚତୁଷ୍ଟି
ସାହିତ୍ୟ ସଙ୍ଗୀତ ରସ ।
ହସିବା ବୃହ୍ନିବା   କହିବା ଗୃରୁରି—,
ଲଭି ହୋଇଲା ହରଷ । ୫
ଏଥି ଅନନ୍ତରେ   ସୁରେଶ ଶାପରେ
ମଧୁବନ ସ୍ୱଜାପୁର
ଜନ୍ମ ଲଭିଲା 'କ—   ଳାବତୀ' ଗନ୍ଧର୍ବ
ସୁ ରୂପେ କୁସୁମ ଶର । ୬
ନୃପତି କେଶରୀ   ନାନା ବିଧିକରି
ମନେ କରି ତା ବିଚାର
କୁଳ ପୁରୋହିତ   ହକାରି କୁମର
ନାମ ଦେଲେ 'ମଧୁକର' । ୭
କେତେ କାଳ ଅନ୍ତେ   କୁମର ବଚନ
ଉପବନେ ପରବେଶ ।
ବୁଲନ୍ତେ କାନନ   ଦେଖନ୍ତେ ସୁରସ
ମନ ହୋଇଲା ଅବଶ । ୮

ଚିନ୍ତା ମନେ ରହି— କୁଙ୍କୁମ ଉପରେ
ବସିଲା ରସିକ ମଣି ।
ଏ ସମୟେ ତହିଁ ନାରଦ ପ୍ରବେଶି
କହନ୍ତି ମଧୁର ବାଣୀ । ୯
କି କାରଣେ ମନେ ବିରସ ତୋହର
ନୃପ ତିଳକ କୁମର ।
ଶୁଣି କର ଯୋଡି କହଇ ବିନୟେ
ହୋଇଣ ରସିକ ବର । ୧୦
ତୁମ୍ଭେତ ସକଳ ହୃଦ ଅନ୍ତର୍ଯାମୀ
କିମ୍ପା ମୋତେ ପୃଚ୍ଛାକର ।
ଏସନ ବଚନ ଶୁଣି ଧ୍ୟାନ ପରେ
ଜାଣିଲେ ସେ ମୁନିବର । ୧୧
ଶୁଣ 'ମଧୁକର' ଏ ମୋର ଉତ୍ତର
ତୋର ସମାନେ ଅବଳା
ଜାତ ହୋଇଅଛି ଭୋଜ ନୃପପୁରେ
ଅମର ପୁର ମହିଳା । ୧୨
ତୁହିତ ଗନ୍ଧର୍ବ ସେହି ଅପସରୀ
ଇନ୍ଦ୍ର ଶାପେ ତୁମ୍ଭେ ଜନ୍ମ ।
ପୁଣି ବେନିଜନ ସଙ୍ଗତ ହୋଇବ
ନ ଲଭ ମନେ ବିଭ୍ରମ । ୧୩
ସେ ପୁରେ କପାଳୀ ପୁରରେ କୁମାରୀ
ବିଦ୍ୟା ପଠନେ ନିରତ ।
ତୁମ୍ଭେ ବେନି ବିଦ୍ୟା— ଅର୍ଥୀ ହୋଇ ଏବେ
ସେଠାକୁ ଚଳ ତୁରିତ । ୧୪

ଆମ୍ଭ ଆଜ୍ଞାରୁ ତୋ— ର ତାର ପୀରତ
ସେଠାରେ ହେବ ନିଶ୍ଚୟ ।
ତୋର ରୂପ ଦେଖି ଅବଶ୍ୟ ମଜ୍ଜିବ
ପୁଣି ସେ ହେବ ତନ୍ମୟ । ୧୫
ଏସନେ କହି ତିରୋହିତ ତକ୍ଷଣେ
ହୋଇଲେ ବ୍ରହ୍ମା-ନନ୍ଦନ ।
ଭ୍ରମର ମନ ଛ— ନ୍ନ ଛନ୍ନ ହୋଇଣ
ପଥ ଗମନେ ଉଚ୍ଛନ୍ନ । ୧୬
ପିତା ମାତାଙ୍କୁ ନ କହିଣ ସେ ପୁରେ
ପ୍ରବେଶ ସେ ମଧୁକର
ପୁର ଜନଙ୍କୁ ପ – ଗ୍ଭରିଣ କପାଳୀ
ମଠେ ମିଳଲେ ଅଥିର । ୧୭
ବେନି କରଯୋଡ଼ି ଶିରରେ ନିବେଶି
ଚରଣେ ପ୍ରଣାମ କରି
ଅଗ୍ରେ ଉଭାହୋଇ, 'ବିନୟ ମୋହର
ଶୁଣିବା ହେ ତପସ୍ୱୀ । ୧୮
ମୋରେ ବିଦ୍ୟାମାନ କରିବ ପ୍ରଦାନ
ମୁଁ ଶିଷ୍ୟପଣେ ଆଗତ ।
ଏ ବଚନ ଶୁଣି ତୋଷ ମନ ହୋଇ
କଲେକ ସେ ସନମତ । ୧୯
ଏମନ୍ତେ କପାଳୀ— ମଠରେ ସମସ୍ତେ
ପଢ଼ନ୍ତି ବିଦ୍ୟା ନିତ୍ୟ ।
ମଧୁକର ବିଦ୍ୟା ଅତିଶୟ ଦେଖି
କପାଳୀ କଲେ ସଦୟ । ୨୦

ଏଥୁ ଅନନ୍ତରେ କେତେଦିନ ଅନ୍ତେ
ନୃପ ତିଳକ ନନ୍ଦିନୀ
କପାଳୀ ମଠେ ପରବେଶ ହୋଇଲ
ନ ଘେନ ପ୍ରିୟ ସଜନୀ । ୨୧
ଏକାନ୍ତେ ବସିଲେ— ଲେଖଇ ସେ ଗ୍ରମା
ନାନା ବର୍ଣ୍ଣେ—ବର୍ଣ୍ଣାବଳୀ ।
ଏସନ ସମୟେ ତାର ପୂରତରେ
ମଧୁକର ଆସି ମିଳି । ୨୨
ବିଧାତା ଘଟନ କେ ଆନ କରିବ
ଶୁଣ ହେ ରସିକ ଜନ
ଏସନ ସମୟେ 'ଇଚ୍ଛା' ହସ୍ତୁ ଖଡ଼ି
ଗଡ଼ିଣ ଗଲା ବହନ । ୨୩
ମଣ୍ଡପ ତଳରେ ଯାଇଣ ପଡ଼ିଲା
ଦେଖିଲା ନୃପନନ୍ଦିନୀ ।
ଅଳପ ହସିଣ ମଧୁକରେ ଚାହିଁ
କହଇ ମଧୁର ବାଣୀ । ୨୪
"ଶୁଣ ହେ କୁମର ଏ ମୋର ଉତ୍ତର
ଖଡ଼ି ଆଣି ବେଗେ ଦିଅ ।
ଗୁରୁଏ ଅଇଲେ ଚଲବେ ଆମ୍ଭଙ୍କୁ
ଏତେ ମୋରେ ଦୟା ବହ" । ୨୫
ଶୁଣି ନ ଶୁଣିଲା ବଦନ ପୋଡିଲା
ନ କହିଲା କିଛି ତାରେ,
ଝୁଣି ଅନାଇଲା ଅଜଣା ହୋଇଲା
ବହେ କହିଲା ତାହାରେ । ୨୬

"ମୁଁ ତୋର ଦାସ ନୁହଇରେ କୁମାରି !
ତହିଁ କି କାର୍ଯ୍ୟ ମୋହର ।
ତୋର ଇଚ୍ଛାହେଲେ ତୁହି ଉଠି ଆଣ
ଶୂଣରେ ନାଗଗ୍ରୀ ବର ।" । ୨୭
ଏମନ୍ତ ଶୁଣି ର— ମଣୀ ମଣି ଭଣି
'ଶୁଣ ତୁମ୍ଭେ ସୁବା ମଣି ।
ଯାହା ବୋଲିବ ହେ ତାହା ମୁଁ କରିବି
ନ ବୋଲ ନିଷ୍ଠୁର ବାଣୀ" । ୨୮
ଏସନ ବଚନେ ଅମୃତ ସମାନ
କର୍ଣ୍ଣେ ଗୃହ୍ନି ପାନ କରି ।
ବୋଇଲେ, "ଶୁଣରେ ନୃପତି-ନନ୍ଦିନ
କି ସତ୍ୟ କର ତୋହରି" । ୨୯
ଶୁଣି ଇଚ୍ଛାବତୀ ହୋଇ ତୋଷମତି
ଜୁଇଁ ସରସ୍ୱତୀ ମୂର୍ତ୍ତି
"ତୁ ଯାହା ବୋଲିବୁ ମୁଁ ତାହା କରିବି
ଏ କଥା ମୋର ସମ୍ମତି" । ୩୦
ଏ ବଚନ ଶୁଣି ଆନନ୍ଦ ସିନ୍ଧୁରେ
ମଜ୍ଜିଲା କୁମାରବର
ମଣ୍ଡପ ତଳରୁ ଖଡ଼ି ଘେନ ଆସି
ଦେଲା ଇଚ୍ଛାର ହସ୍ତର । ୩୧
ରମା ବେନିକର କରେଣ ଧରିଣ
ବୋଇଲା କୁମର ମଣି ।
ତୁ ମୋ ର ରମଣୀ ହେବୁ ପ୍ରାଣମଣି
କରିବୁ ନିଶ୍ଚେ ଏ ବାଣୀ ।" ୩୨

କୁଣ୍ଡି ପଲଙ୍କିତ କୁରଙ୍ଗୀ ନୟନା
କଲା ତାରେ ସନମତ ।
ଗୁରୁଏ ଜାଣିଲେ ଅସାର ହୋଇବ
ବୋଲି ଚଳିଲା ତୁରିତ । ୩୩

ଅଶ୍ୱିସି ନାଗରୀ କୁଚର ମଣ୍ଡନ
ରସିକ କିଶୋର ବର ।
ଗୋବର୍ଦ୍ଧନ ଧାରୀ ଗୋକୁଳ ବିହାରୀ
ନବୀନ ପଞ୍ଚିମ ଶର । ୩୪

ସେ କୃଷ୍ଣ ଚରଣ ପଙ୍କଜ ମଧୁର
ଲାଳଯ ମନ୍ତ୍ର ହୋଇଣ ।
ନୃପ ଧନଞ୍ଜୟ— ମନ ମଧୁକର
ନିରନ୍ତରେ ମନ୍ତ୍ରେ ପୂଣ । ୩୫

---

# ତୃତୀୟ ଛାନ୍ଦ

(ରାଗ—କାନଡ଼ା)

ଏମନ୍ତେ କେତେହେ ଦିବସ ଗମନ୍ତେ
ପ୍ରବେଶ ମାସ ଭାଦ୍ରପଦ ।
ଯେଶେ ବଢ଼ଇ ବିରହୀର ଖେଦ,
ଯହିଁରେ ବିବିଧ କାମନା ଲଭିଣ
କାମୀ ଲଭନ୍ତି ଆନନ୍ଦ, ହେ ଦଇବ ।୧।

ଏମନ୍ତେ ଶୁକଳ ପକ୍ଷର ଚତୁର୍ଥୀ
ଦିବସ ହୁଅନ୍ତେ ପ୍ରବେଶ
ଶିଷ୍ୟଗଣେ ମିଳିଲେ ଗୁରୁପାଶ ।
ଗଣେଶ ପୂଜା ବିଧି ଚିନ୍ତି କପାଳୀ
ଗ୍ରନ୍ଥିକୁ ଦେଲେ ଆଦେଶ ହେ, ସୁଜନେ ।୨।
ଶୁଣ ବାବୁ ଗ୍ରନ୍ଥି ଏହି ଉପବନୁ
ବିବିଧ ପୁଷ୍ପ ତୋଳି ଆଣ
ତୁମ୍ଭେ ସମସ୍ତ ପ୍ରକାରେ ସିଆଣ
ବିଘ୍ନରାଜ ପୂଜା କରିବା ଏଠାରେ
ସମସ୍ତ ବିଦ୍ୟା କାରଣ ହେ କୁମର ।୩।
ଶୁଣିଣ ଗ୍ରନ୍ଥି ହସ୍ତ ବେନି ଯୋଡ଼ିଣ
ପ୍ରଣାମ କରିଣ କହଇ ।
ମୋର ବଚନ ଶୁଣିବା ଗୋସାଇଁ
ମୁହିଁ ଏକା ହୋଇ ପୁଷ୍ପ ତୋଳିବାକୁ
ମନ କେବେହେଁ ନୁହଇ ହେ, ହେ ପ୍ରଭୁ ।୪।
ଶୁଣିଣ କପାଳୀ ମନେ ମନେ ହସି
ବୁଝିଲେ ଶିଷକୁ ତୁରିତ
ଇଚ୍ଛା ଶୁଣି ହୋଇଲା ପ୍ରଣମିତ,
ମୁହିଁ ଗ୍ରନ୍ଥି ସଙ୍ଗେ କୁସୁମ ତୋଳିଣ
ଆସି ମିଳିବି ତୁରିତ ହେ ହେ ପ୍ରଭୁ ।୫
ଶୁଣି ତା ସିଦ୍ଧ- କାର କରି କପାଳୀ
ବୋଇଲେ ଯାଅ ବେନିଜନ
ନାନା ପୁଷ୍ପ ଘେନି ଆଣ ବହନ,
ଏ ବଚନ ଶୁଣି ସେ, ବେନି ଜନର
ଆନନ୍ଦ ହୋଇଲା ମନ, ହେ ସୁଜନେ ।୬।

ପ୍ରଭୃତ ଲଭିଣ	ରଥାଙ୍ଗ ଯୁଗଳ
ଯେସନ ଲଭନ୍ତି ଆନନ୍ଦ,
ଯେହ୍ନେ ବସନ୍ତ ମାଧବୀ ମାକନ୍ଦ ।
ତେସନ ବେନି	ଜନ ମନ ହୁଅନ୍ତେ
ବେଲୁ ବଢେ ଅନୁବନ୍ଧ, ହେ ସୁଜନେ ।୭।
ଗୁରୁ ଆଜ୍ଞା ଶିରେ	ଘେନିଣ ସତ୍ୱରେ
ରସିକ ରସିକଣୀ ବେନି
ଯାଇ ପ୍ରବେଶ ହେଲେ ପୁଷ୍ପବନୀ,
ଯେସନ ନନ୍ଦନ	ବନର ମଧରେ
ମିଳି ରତି କାମବେନି ହେ, ସୁଜନେ ।୮।
ଜାତି, ଯୂଥୀ, ମଲ୍ଲୀ,	ମାଲତୀ ସେବତୀ
ବ୍ରତତୀ ତତିରେ ଯେସନ
ଭୃଙ୍ଗ ପିକବର କରନ୍ତି ଗାନ,
ବିକଚ କୁସୁମ	ଚୟ ବରଷନ୍ତେ
ହରେ ଯୋଗିଜନ ମନ, ହେ ସୁଜନେ ।୯।
ମନ୍ଦ ପବନେ	ତରୁଗଣେ ଚଳି
ବଲ୍ଲରୀ ଆଶ୍ଳେଷ ବିସ୍ମରି,
ଶାଖା ହସ୍ତ କି ଅଛନ୍ତି ପ୍ରସାରି ?
ନବ ଅଙ୍କୁର	ପୁଲକ ବହି କି ସେ,
ଅନୁରାଗ ଭରେ ଭରି,ହେ ସୁଜନେ ।୧୦।
କେ ବଣ ତରୁକୁ	କରି ପରିରମ୍ଭ
ଲତା ଦିଶୁଅଛି ଶୋଭନ,
ଅନୁରାଗୀ ବାଳା କାନ୍ତେ ଯେସନ,
ଯେସନେ ଚିର	ପରବାସୀ—ବଲ୍ଲଭ
ଲଭି ରମଣୀ ରତନ, ହେ ସୁଜନେ ।୧୧।

ପୁଷ୍ପ ଗୁଚ୍ଛ ମୁଖେ କେବଣ ବଲ୍ଲରୀ
ଅବନତା ହୋଇ ରହିଛନ୍ତି
ମନ୍ଦ ମନ୍ଦକ ମଧୁର ତେଜୁଛି,
ଏଏ ମନବତୀ ବଲ୍ଲରେ ମାନ
କରି ଲୋତକ ମୁଞ୍ଚୁଛନ୍ତି, ହେ ସୁଜନେ ।୧୨।
ଅଛନ୍ତି ତାହାର ପୁନ୍ନାଗ ଶୋଭନ
କୋକିଲ ଧ୍ୱନିରେ ରଞ୍ଜନ,
କି ସେ କହୁଛି କାନ୍ତାରେ ବଚନ,
କୁସୁମ ଭରେ ଅବନୀ ଗତ ଶାଖା
କରେ କି ତାରେ ପ୍ରଣାମହେ, ସୁଜନେ ।୧୩।
ଏସନ କାନନ ଦେଖିଣ ଶୋଭନ
ଲଭିଲେ ବେନି ଖେଦମନ
ପ୍ରୀତ ବଢ଼ିଲା ନୟନେ ନୟନ
ବେଲୁବେଲ ଚିତ୍ତ ଅଥିର ହୁଅନ୍ତେ
ଗୂଢ଼ କହଇ ବଚନ, ହେ ସୁଜନେ ।୧୦।
ଶୁଣରେ ନୃପ ନନ୍ଦିନି କୃଶୋଦରି
ଏଣାଙ୍କ ବଦନି କୁମାରି !
ତୁହେ ବାମା ମୋର ଜୀବ ଈଶ୍ୱରୀ
ଯହୁଁ ସତ୍ୟମୋରେ କରିଅଛୁଁ ପୂର୍ବେ
ତହୁଁ ଥିବୁ ମନେଧରିରେ ରମଣି ।୧୫।
ମୁହିଁ ପୁଷ୍ପ ଏବେ ତୋଳିବି ବୃକ୍ଷରୁ
ସୁଖରେ ରମରେ ରମଣି,
ମୋରେ ବହିଥିବୁ ଦୟା ତରୁଣି !
ଚେଲାଞ୍ଚଳରେ ତୁ କୁସୁମ ନେଉଥିବୁ
ଘେନ ମୁ ପ୍ରାଣ—ମିତଣିରେ, ସୁନ୍ଦରୀ । ୧୬ ।

ଏମନ୍ତ ଶୁଣିଣ ନୃପତିକୁମାରୀ
ବୋଲେ ଶୁଣ ସୁବାରତନ
ତୁମ୍ଭୋ ଜୀବର ଜୀବ ବୋଲି ଜାଣ,
ମୁହିଁ କୁସୁମ ଚେଳଣ ପକାଇବି
ଘେନିବ ତୁମ୍ଭେ ବହନ ହେ, କୁମର । ୧୭ ।
ଏମନ୍ତେ ବୋଲିଣ ରମଣୀ ରତନ
ବାନ୍ଧ କୁସୁମ ତୋଳନ୍ତେ
ଶୁକ ନଚେଖି ଶୁଣ୍ଡେ ନେଇଅନ୍ତେ,
ଉଡି ପବନେ ଅଇଲ ଉରଦେଶ
ଦେଖିଲ କଛି ତୁରିତେ ସେ, କୁମର, ।୧୮।
ଦେଖି ଅତ୍ୟନ୍ତ ଆନନ୍ଦକୁ ଲଭିଲ
ଧନ୍ୟ କଲା ତାର ଜୀବନ,
କଏ ଅନ୍ଧ ପାଇଲା ଚକ୍ଷୁଦାନ,
ଦରିଦ୍ର କୋଟିନିଧି ଦେଖି ଯେସନ
ଲଭଇ ଆନନ୍ଦ ମନ ହେ ସୁଜନେ । ୧୯ ।
ପୁଣି ଶୁକଭଣି ଶୁଣରେ ରମଣି
ମୋରେ ତୁ ଦୟା ନ ତେଜିବୁ
ମୁଁ ତୋ ନିଜଦାସ ବୋଲି ଜାଣିବୁ
ତୁ ମୋର ନୟନ ପ୍ରତିମା ଅବଳା
ଜଗତରୟ ସୁଖ ସବୁରେ, ସୁନ୍ଦରି ।୨୦।
ଶୁଣି ଶୁକବାଣୀ ନୃପତି ନନ୍ଦନୀ
କଚ୍ଛି ସଲଜ୍ଜିତ ହୋଇଲା,
ଜାଣି ଶୁକ ତା ଚରଣ ଛୁଇଁଲା
ମତେ ରେ ରମଣୀ ଅବଶ୍ୟ କରିବୁ
ବୋଲି ଆଲିଙ୍ଗନ ନ କଲା ସେ, କୁମର, । ୨୧ ।

ଶୁଣି ଏସନ ଦଇନା ଇଚ୍ଛାବତୀ
ଚିତ୍ତରେ ପ୍ରସନ୍ନ ହୋଇଣ ।
ଗଳେ କୁସୁମମାଳା ଲମ୍ବାଇଣ
ଆଜଠାରୁ ତୁମ୍ଭେ ଏ ଜୀବ କାରେଣି
ହେଲି ତୋର ଦାସୀ ଜାଣ ହେ କୁମର ।୨୨।
ଏସନ ବୋଲି ନାନା ପୁଷ୍ପ ତୋଳିଣ
ଗୁରୁ ସମୀପେ ହେଲେ ଯାଇ
ପୁଷ୍ପ ଦେଇଣ କହିଲେ ବାନେଇ,
ଉପଚ୍ଛର ପୂଜା- ବିଧି ସାରିଗଲେ
ସର୍ବେ ଗୁରୁ ଆଜ୍ଞା ପାଇ ହେ, ସୁଜନେ ।୨୩।
ନଗମ ଯାହା ମହିମା ନ ଜାଣଇ
ଦେଖି ସେ ନୀଳାଚଳେ ବିଜେ,
ଶଙ୍ଖ ଚକ୍ର ବେନିକରେ ବିରାଜେ,
ଭକ୍ତ ଲୋଚନ ଚକୋର ଶଶଧର
ରୂପେ କୋଟିକାମ ଗଞ୍ଜେ ସୁଜନେ ।୨୪।
କୋଟି ଶଶଧର ନିନ୍ଦଇ ଶ୍ରୀମୁଖ
ନୀଳ ଘନକୁ ନିନ୍ଦେ ତନୁ,
ଭ୍ରୁରୁ ନିନ୍ଦଇ ଫୁଲଧନୁ ଧନୁ
ଭଜେ ନୃପତି ଧନଞ୍ଜୟ ସନ୍ତତ
ସେ ରୂପ ନ ଯାଏ ମନୁ ହେ, ସୁଜନେ ।୨୫।



# ଚତୁର୍ଥ ଛାନ୍ଦ

## ରାଗ—ଶଙ୍କରାଭରଣ

ଏଥୁ ଅନନ୍ତରେ କେତେକାଳ ଅବଶେଷ
ନୃପଜା ଯୌବନଦଶା ହୁଅନ୍ତେ ପ୍ରବେଶ,
ଅନ୍ତଃପୁର ନାରୀଗଣ,
ବହୁର କରି କୁମାରୀ କଲେକ ରକ୍ଷଣ ।୧।
ମନୋରମ ଉପବନ ବିଚିତ୍ର ଭୁବନ
କୁମାରୀ ରକ୍ଷା ନିମନ୍ତେ ରଖିଲେ ରାଜନ,
ଘେରିଥାଇ ଶେଷ ପ୍ରାକାର,
ଯେବଣ ଦେଶରେ ନାହିଁ ସମୀର ସଞ୍ଚାର ।୨।
ରକ୍ଷା କରିଛନ୍ତି ଯାହା କଞ୍ଚୁକୀ ନିକର
ସେପୁରେ ଇଚ୍ଛାକୁ ସେ ରଖିଲେ ନୃପବର,
ମନେ କରନ୍ତି ବିଚାର,
କେବଣ ନୃପ କୁମାର ବରିବଇ ବର ।୩।
କିଶୋର ବୟସୀ ଦାସୀ ଗଣେ ସେବାଥାନ୍ତି
ନୃତ୍ୟ, ଗୀତ ହାସ୍ୟ ରମା ଚିତ୍ତକୁ ତୋଷନ୍ତି,
ସେ ଯେ ନାନା କଉତୁକେ,
ରମଣୀ ରଞ୍ଜନ ମନ ହରେ ଏକେ ଏକେ ।୪।
ଏମନ୍ତରେ ଇଚ୍ଛାବତୀ ରହେ ଅନ୍ତଃପୁର
ବିଦ୍ୟା ପଢ଼ିବାକୁ ଯହୁଁ ନୋହିଲା ବାହାର,
ରହି ନ ଦେଖି ତା ମୁଖ
ଘନ ହବା ନ ସହଇ ଲଭି ମନେ ଦୁଃଖ ।୫।

ପଢ଼ିବାର ବିଦ୍ୟାମ ନ ସବୁ ପାସୋରିଲା,
ଖାଇବା, ଖେଳିବା ଆଉ ମନେ ନ ଘେନିଲା,
ଏବା ଇଚ୍ଛା ଚିନ୍ତା ତାର
ମରମ ଦହଇ ତାର ମନମଥ ଶର ।୬।
ଏମନ୍ତ ଦୁଃଖରେ ଉପବନର ଅନ୍ତରେ
ପ୍ରବେଶ ହୋଇଲା ଯାଇ ଅତି ଖେଦଭରେ,
ଦେଖି ଏହୁ ପୁଷ୍ପ ବନି,
ଯହିଁ ପୁଷ୍ପ ମାଳା ଦେଲା ମରାଳଗମନୀ ।୭।
ଚିନ୍ତା କଲା ଏଠାବରେ ଥିଲା ବରବାଳୀ
ଏତେ ବୋଲି ଅବନୀରୁ ଧୂଳି ହୃଦେ ବୋଳି,
ମୋର ପ୍ରିୟ କୁନ୍ଦଦନ୍ତୀ,
କି କାରଣେ ଏଥକୁ ନଇଲା ଇଚ୍ଛାବତୀ ।୮।
ମନରେ ଲଭିଲା ଯେଣୁ ସୁବନ୍ଧୁ ଲଭିଲ
ସେ କାରଣୁ ଚନ୍ଦ୍ରମୁଖୀ ଏଥକୁ ନଇଲା,
ମୋର ଧିକ ଏ ଜୀବନ,
ସେ ସମୟେ ଶୋଭା ତାର ନଦେଖେ ନୟନ ।୯।
ବସିଥିବ ମୋ ଚିନ୍ତାରେ ପ୍ରିୟ ସଖୀ ଘେନ,
ମୃଦୁ ମୃଦୁ ହସୁଥିବ ପଙ୍କଜ ଲୋଚନୀ,
ତାହା ନ ଦେଖିଲି ମୁହିଁ,
ଦାରୁଣ ଜୀବନ ମୋର ରହିଛି କମ୍ପାଇ ।୧୦।
ଢାଳି କରି ଚାହୁଁଥିବ ନୟନେ ରମଣୀ
କି,କି କରି ସଖୀଆଗେ କହୁଥିବ ବାଣୀ.
ତାହା କର୍ଣ୍ଣେ ନ ଶୁଣିଲି
ଅବନୀ ଜନମ ମୋର ବିଫଳ ହୋଇଲା ।୧୧।

ନୟନରେ ନ ଦେଖିଲି ପ୍ରିୟା ପୟୋଧର
ହୀନ ବାସ ପୁଟି ବଣୁଥିବ ଯେ ରୁଚିର,
ନବ ମୋତି ମାଳା ସଙ୍ଗ,
ଶମ୍ଭୁ ଶିରେ ଶୋହେ ଯେହ୍ନେ ଜାହ୍ନବୀ ତରଙ୍ଗ ।୧୨।
ଚଳ ଚଳ ମନ୍ଦେ ଗୃଳୁଥିବ ହରିଣାକ୍ଷୀ
ପାଦଯୋଗେ ଶୋଭା ପାଉଥିବ ରଙ୍ଗଲାକ୍ଷା,
ତହିଁ ନୂପୁର ଶୋଭନ,
କାଦମ୍ବ କୂଜିତ ପ୍ରାୟେ କରୁଥିବ ସ୍ୱନ ।୧୩।
ଉଡ଼ୁଥିବ ପିୟାକୁଚ ଅଞ୍ଚଳ ପବନେ
ସଖୀକୁଳେ କ୍ରୀଡ଼ା କରୁଥିବ ଉପବନେ,
ତାହା ବାରେ ନ ଦେଖିଲି,
ମୋର ଏ ବେନି ନୟନ ବିଫଳ ଲଭିଲି ।୧୪।
ଯାହା ଆଶେ ପିତା ମାତା ବନ୍ଧୁ ତେଜ୍ୟାକଲି
ନୃପ ସମ୍ପଦ ମୋହର ବିଫଳ ମଣିଲି,
ହେଲି ଭିକ୍ଷୁକ ଆକାର,
ଇଚ୍ଛାବତୀ ମୁଖ ଅଉ ନ ଦେଖିଲି ମୋର ।୧୫।
ଆହାରେ ନୃପ ନନ୍ଦିନୀ ଘେନ ମୋ ବେଦନା,
ନୟମ କରିଣ ଯାହା ବୋଲିଲୁ ଅଙ୍ଗନା
ତାହା କେହ୍ନେ ପାସୋରିବ ?
ଯେତେ ଦିନ ଯାଏ ଜୀବଧରିଣ ମୁଁ ଥିବ ।୧୬।
ଦାହ କନକ ବରଣୀ କୃଶୋଦରୀ ରମା
ତୋତେ ଲଭି ମନସିଜ ଲଭିଲା ଗାରିମା,
ତୋର ଦାୟ ମୁହିଁ ପ୍ରିୟା,
ମାର ମୁଖୁଁ ରକ୍ଷାକରି କରନ୍ତୁ ସୁଦୟା ।୧୭।

ଧିକ ହେଉ ମୋ'ର ଏବେ ଏହୁ ଭୁଜ ବେନ,
ଆଶ୍ଳେଷ ନ କଲା ତୋତେ କମଳ ବଦନୀ,
ଧିକ ଏ ମୋର ବଦନ,
ତୋର ବିମ୍ବାଧରୁ ମଧୁ ନ କଲା ଏ ପାନ ।୧୮।
ବିଫଳ ମୋହର ଅଙ୍ଗ ଦହେ ପୁଷ୍ପଧନୁ
ଯେଣୁ ନଛୁଇଁଲା ଏ ସୁତନୁକୁ ସୁତନୁ,
ଧିକ ଏ ମୋର କରଜ,
ପୃଥୁ କୁଚ—କୁମ୍ଭେ ତୋର ନୋହିଲା ବିରଜ ।୧୯।
ବିଅର୍ଥେ କର ପଲ୍ଲବ ବିଧାତା ବିହିଲା,
ଯେଣୁ ତୋର ଗଣ୍ଡେ ଏହୁ ଚିହ୍ନକ ନ କଲା,
ଏହୁ ଓଷ୍ଠ ନୋହେ ଧନ୍ୟ,
ତୋର ନୟନରେ ଏହୁ ନ ଦେଲା ଚୁମ୍ବନ ।୨୦।
ହୃଦ ତଟେ ପ୍ରିୟା ମୋର ନୋହିଲା ଶୋଭନ
ଯେଣୁ କୁଚ କୁମ୍ଭେ କର ନ କଲା ମଣ୍ଡନ,
ଯୋଗ୍ୟ ନୋହିଲା ରମଣୀ,
କୁଟିଳ କୁନ୍ତଳେ ତୋର ନ ରଞ୍ଚିଲା ବେଣୀ ।୨୧।
ହାହାରେ ଦଇବ ମୋର ଘେନ ହେ ଭଗତ,
ଇଚ୍ଛାବତୀ ଦେଇ, ଜୀବ କରମୋ ମୁକତ,
ସେ ମୋ ବାଞ୍ଛାତରୁ ବର,
ସେ ମୋହର ଚିନ୍ତାମଣି ଜୀବର ଈଶ୍ୱର ।୨୨।
କାନନେ ଭ୍ରମିଣ ଘୃଷ୍ଟ କରନ୍ତେ ରୋଦନ
ନୟନୁ ଲୋତକ ଧାର ତେଜେ ଘନ ଘନ,
ଅବନୀରେ ଲୋଟି ପଡ଼ି,
ଆହା ପ୍ରିୟା ବୋଲିଣ ହୃଦରେ କରତାଡ଼ି ।୨୩।

ଏ ସମୟେ ଇଚ୍ଛାବତୀ ପ୍ରାଣର ସଙ୍ଗିନୀ,
କୁସୁମ ତୋଳିଣ ଆସି ମିଳେ ପୁଷ୍ପବନୀ,
ବୃକ୍ଷୁ ଗୃହକୁ ଦେଖିଲ,
ଲତାନ୍ତର ହୋଇ ରହି ସମସ୍ତ ଜାଣିଲ ।୨୪।
ସନ୍ନିଧେ ମିଳିଣ ତାର ପଚ୍ଚରଇ ହସି
କି କାରଣେ ଏସନ ତୁ କୁମରି ବଦେଶୀ,
ତୋ ଏ ଚିନ୍ତା କି କାରଣ ?
ମୋ ଆଗେ କହ ବଚ୍ଚର ଚତୁର ସୁଜାଣ ।୨୫।
ଏମନ୍ତେ ବଚନ ଶୁଣି ଗୃହ ପରଦେଶୀ
ବିନୟ ହୋଇଣ ତାରେ ବଚନ ପ୍ରକାଶି,
ତୋର ସଖୀ ଇଚ୍ଛାବତୀ,
ତାରବିନୁ ମୋର ଆଉ ନାହିଁ ଆନଗତ ।୨୬।
ଯେବେ ତା ଚନ୍ଦ୍ରବଦନ ନ ଦେଖିବି ସଖୀ ।
ନଷ୍ଟୟେ ପ୍ରାଣ ତେଜିବି ଶୁଣରେ ସୁମୁଖି,
ସେ ମୋ ଜୀବନ କାରଣୀ,
ତାର ବିନୁ ଜନ ମୋର ନ ସରଇ ପୁଣି ।୨୭।
ଚରଣ ଧରି କହୁଛି ମୋ ବୋଲ କରିବୁ,
ଇଚ୍ଛାବତୀ ପଦ୍ମ ମୁଖ ବାରେ ଦେଖାଇବୁ,
ତେବେ ରଖିବି ଜୀବନ,
ନୋହିଲେ ତୋ ଦେଖୁ ଦେଖୁ ଲଭିବି ନିଧନ ।୨୮।
ଶୁଣିଣ ବୋଲଇ ସଖୀ ଗୃହକୁ ଉତ୍ତର
କିପାଇଁ ଜୀବ ତେଜିବୁ ନୁହ ତୁ ଆତୁର ।
ମୋର ପ୍ରାଣର ସଙ୍ଗାତ ।
ଅବଶ୍ୟ ଭେଟିବୁ ନୃପସୁତା ଇଚ୍ଛାବତୀ ।୨୯।

କାଲି ବସି ଥିବୁ ତୁହି ଏହି ଉପବନୀ
ଦିନ ଶେଷେ ଭେଟିବୁ ତୁ ନରେଶ ନନ୍ଦିନୀ,
ହୃଦୁ ତାପ ଦୂର କର,
ଏମନ୍ତ କହିଣ ସଖୀ ଗଲା ନିଜ ପୁର ।୩୦।
ଶ୍ରୀବୃନ୍ଦାବନରେ ବିଜେ ନୀପତରୁ ମୂଳ
ଶିମୁଣ୍ଡି ଉପରେ ଶୋହେ ସେବତିର ଚୂଳ,
ଗଣ୍ଡେ ମକର କୁଣ୍ଡଳ,
ମୃଦୁ ବେଣୁ ବାଦନରେ କମ୍ପିତ ଚଞ୍ଚଳ ।୩୧।
ଗୋପାଙ୍ଗନା ଆଲିଙ୍ଗନେ ମଧ୍ୟ ଭାଗ ଶୋହେ
ନବ ଘନେ ଜଡ଼ି କି ଚଞ୍ଚଳା ସ୍ଥିରେ ରହେ,
ତାହା ଚିନ୍ତି ଅନୁଦିନ,
ନୃପ ଧନଞ୍ଜୟ ଭଞ୍ଜ ହୋଇଛି କି ଲୀନ ? ।୩୨।

---

## ପଞ୍ଚମ ଛାନ୍ଦ

ରାଗ—ମାଳବ

ଏଥୁ ଅନନ୍ତରେ ଗୂଢ଼ ଦୂତୀ ବାଣୀ ଶୁଣି;
ଅନ୍ଧ କି ନୟନ ଲଭେ ତେହ୍ନେ ସୁବାମଣି ।୧।
ବେଳୁ ବେଳ ଆନନ୍ଦ ତା ନ ହୋଇଲା କହି
ଯୁଗ ଶତେ ବିଗ୍ରରି ଜାଣିବା ଅବା ବହି ।୨।
ଏମନ୍ତରେ ଅତି କଷ୍ଟେ ଯାପି ସେ ରଜନୀ,
ପୁଣି ପୁଣି ମନକୁ କହଇ ଇଚ୍ଛା ବାଣୀ ।୩।

ଏବେଠାରୁ ହୋଇବୁ ଧନ୍ୟ ଲଭି ମୃଗନୟନା,
ବାସମ ହୋଇବ ଏବେ ଏତୁ ଘୋର ନିଶା ।୪।
ତାର ବିମ୍ବାଧରୁ ମଧୁ କରିବୁ ତୁ ପାନ,
ଥିର ହୋଇ ରହିଥାଅ ନୋହିଣ ଉଚ୍ଛନ୍ନ ।୫।
ଯେବେ ତୋର କୋଟି ଜନ୍ମ ପୂର୍ବ ଭାଗ୍ୟଥିବ,
ଇଚ୍ଛାବତୀ ଅଙ୍ଗସଙ୍ଗ ତେବେ ସେ ହୋଇବ ।୬।
ପୁଣି ନେତ୍ରକୁ ବୋଲଇ ତୁମ୍ଭେ ହେବ ଧନ୍ୟ,
ଇଚ୍ଛା ସୁବା ଶୋଭା ଯେବେ କରିବ ଲୋକନ ।୭।
ପୁଣି ବୋଲେ ଶ୍ରୁତି ଯୁଗ ତୁମ୍ଭ ଫଳ ହେବ,
ଯେବେ ତା ବାଣୀକି ତୁମ୍ଭେ ଶ୍ରବଣ କରିବ ।୮।
ଏମନ୍ତ ପ୍ରକାରେ ସର୍ବ ଅଙ୍ଗ ବୋଧୁ ବୋଧୁ,
କଞ୍ଚିତ ପାଣ୍ଡୁର ଭବ ଲଭେ ତହିଁ ବିଧୁ ।୯।
କୋକିଳ କୁଳ ଉତ୍କୋଳ ନାଦ ବନେ ପୂରି,
ଶାରଙ୍ଗ ଶବଦ ନଭେ ରହିଲେ ଆବୋରି ।୧୦।
ବନଙ୍ଗନାମାନ ତମ ତେଜିଣ ହରଷ,
ତାମ୍ରଚୂଡ଼ା ଧ୍ୱନି ଶୁଣି ତୁଳଟା ବିରସ ।୧୧।
କଞ୍ଚିତ ବିକାଶ ଜଳେ ଲଭିଲେ ନଳିନୀ,
ହରିହରିତେ ପ୍ରକାଶ ଦେଖି ଦିନମଣି ।୧୨।
ଦୃଷ୍ଟେ ହୃଦ କମଳ ହେ ଆନନ୍ଦ ଲଭିଲା,
ଦିନମଣି ସମ ସଖୀ ସଚେତ ହୋଇଲା ।୧୩।
ଚଞ୍ଚଳ ନୟନ ଚିତ୍ତ ଲଭଇ କାତର,
ସବୁ ତରୁ ଗଣ ବନେ ଦୃଶିର ଆକାର ।୧୪।
ପୁଣି ବୋଲେ ଆହା କୃପାସିନ୍ଧୁ ଦାମୋଦର,
ଦୁଃଖୀ-ଜନ ବନ୍ଧୁ ତୁମ୍ଭେ ମୋତେ କୃପାକର ।୧୫।

ସତ ହେ ବୃନ୍ଦାକି ଆଜ ଦେଖିବି ଏ ବଣୀ !
ନେଇ ଭେଟ କରାଇବ ଚନ୍ଦ୍ରମା ବଦନୀ ।୧୬।
କୋଟି ଜନ୍ମେ ସାଗରରେ ଦେଇଥିଲେ ଝାଂସ,
ତେବେ ଅବା ହେବି ମୁହିଁ ଇଚ୍ଛାବତୀ ଦାସ ।୧୭।
କି କରୁଣ ଥିବ କେଉଁଠାରେ ବରବାଳୀ,
ସଖୀ ସଙ୍ଗେ କରୁଥିବ ନାନା ରଙ୍ଗ କେଳି ।୧୮।
ଯେ ତାହାର ପଦ ଯୁଗ କରିବ ମାର୍ଜନ,
ଧନ୍ୟ ଧନ୍ୟ ଜୀବ ତାର, ପଙ୍କଜ ଲୋଚନ ।୧୯।
ସତେହେ ଦେଖିବି ମୁହିଁ ତାର ଚନ୍ଦ୍ରମୁଖ,
ବହିକ ଖଣ୍ଡିବେ ମୋର ଏହୁ ଘୋର ଦୁଃଖ ।୨୦।
ଯେତେବେଳେ ବୃକ୍ଷକୁ ଉଠିଲ ସୁନ୍ଦର,
ସେତେବେଳେ ଶୋଭା ମୋର ରହିଛି ନେତ୍ରର ।୨୧।
ମୋର ଏ ଜନ୍ମର ପୁଣ୍ୟ ମଳୟ ସମୀର,
ବହି ଉରସ୍ଥଳୁ ବାସ କଛି କଲାଦୂର ।୨୨।
ଦେଖିଅଛି ତାର କୁଚ ଅଙ୍କୁରିବା ରଙ୍ଗ,
ତେଣୁ କରି ପ୍ରାଣସହି ଅଛି ମୋର ଅଙ୍ଗ ।୨୩।
ମୃଦୁ ମୃଦୁ ହସି ମୋତେ କଲାଯେ ଆଶ୍ଳେଷ,
କ୍ଷଣେ ହେ ମନରୁ ମୋର ନ ଯାଏ ସେ ରସ ।୨୪।
ଏମନ୍ତରେ କଷ୍ଟେ କଷ୍ଟେ ବଞ୍ଚିଲ ସେଦିନ,
ସଖୀ ଆଗମନ ପଥେ ଚାହିଁଲ ନୟନ ।୨୫।
ଏମନ୍ତେ ପ୍ରଦୋଷ କାଳ ହୋଇଲା ପ୍ରବେଶ,
କମଳିନୀ ବୃନ୍ଦ କଛି ଲଭିଲେ ବିରସ ।୨୬।
ବରୁଣ ଦିଗ ମଣ୍ଡଳେ ଅରୁଣ କିରଣ,
ସ୍ମିତ ହୃଦେ ଅତ୍ୟନ୍ତ ବାନ୍ଧିଲା ପଞ୍ଚବାଣ ।୨୭।

ମଦନେ ଶକଳ ହୋଇ ରସିକ ସୁଜାଣ,
ଉଠଇ ବସଇ ପୁଣ ଗୃହେଁ ବାଗ ଗଣ ।୨୮।
ଏ ସମୟେ ପ୍ରବେଶ ଇଚ୍ଛାର ପ୍ରାଣସଖୀ,
ବେଲୁବେଲ ଆନନ୍ଦ ତାହାକୁ ଗୃହ ଦେଖି ।୨୯।
ପୁଣି ମନେ ବିଚାରଇ ଆସଇ ତଡ଼ିତ,
ମୋର ଦୁଃଖ ଘେନିଥିବ ନାକ ପ୍ରାଣମିତ ।୩୦।
କର ବେନି ଯୋଡ଼ି ବୋଲେ ଶୁଣ ଆହେ ବହି,
କହିବଟି ପ୍ରିୟବାଣୀ ଏଥୁ ପ୍ରାଣସହି ।୩୧।
ପୁଣି ଆସଇତ ମନେ ଲଭଇ ଉଚ୍ଛନ୍ନ,
ସଖୀର ପ୍ରସନ୍ନ ମୁଖ ଦେଖି ଲଭେ ଜ୍ଞାନ ।୩୨।
ଏମନ୍ତ ସମୟେ ସଖୀ ସନ୍ନିଧେ ପ୍ରବେଶ,
ଗୃହ ମୁଖଚନ୍ଦ୍ର ଗୃହିଁ ହେଲା ହସ ହସ ।୩୩।
ସୁସ୍ୱର ସୁରସ ମଧୁ ବଚନ ଧ୍ୱନାଣି,
ନୟନ ଗୋଚର ତୋର ହେବ ପିକଭାଷୀ ।୩୪।
ଏମନ୍ତ ଶୁଣିଣ ଗୃହ ଧରିଣ ଚରଣ,
ବୋଲେ ପ୍ରିୟ ସହଚରି । ରଖ ମୋ ପରାଣ ।୩୫।
ବିଳମ୍ବ ନ ସହେ ମୋର ଦୁଃସହ ବେଦନା,
ବେଗେ ନେଇ ଦେଖାଅ ସେ ନରେଶ ନନ୍ଦନା ।୩୬।
ମୋ ନେତ୍ର ଚକୋର ବାଳା ମୁଖ ସୁଧାକର,
ଲଭିକ ଅମିୟ ପାନେ ହୋଇବ ନିର୍ଭର ।୩୭।
ସତେ ତୃଷିତ ଗୃତକ ତୃଷା କ ହରିବ
ଏ ସମୟେ ନବଘନ ନୀରଦାନ ଦେବ ।୩୮।
ଭେକୀ ଭୃଙ୍ଗ ଆଜକ ଲଭିବ କମଳନୀ,
ସତେ ନଁ କ ଏକଥା କରିବେ ଚକ୍ରପାଣି ।୩୯।

ଦୁଃସହ୍ୟ ବିରହ ତାପେ ଗଲା ପ୍ରାଣମୋର,
ବଚନ ଅମୃତ ଦାନେ କରନ୍ତୁ ଉଦ୍ଧାର ।୪୦।
କ୍ଷଣକ ବିଳମ୍ବ ଏବେ ମୋର ବଜ୍ରପାତ,
ଇଚ୍ଛାବତୀ ମୁଖ ଦେଖି ରହୁ ମୋ ଜୀବିତ ।୪୧।
ଶୁଣି ସହଚରୀ ତାକୁ କରିଣ ଆଶ୍ୱାସ,
ଗୃହକୁ ଘେନିଣ ଗଲା ଜେମା ପୁର ପାଶ ।୪୨।
ନୀଳାଦ୍ରି ବିହାରୀ-ପାଦପଦ୍ମ ସରସିଜେ,
ନୃପଧନଞ୍ଜୟ ମନ ମଧୁକର ମଜ୍ଜେ ।୪୩।

---

# ଷଷ୍ଠ ଛାନ୍ଦ

ରାଗ—ଆଷାଢ଼ଶୁକ୍ଳ

ଶ୍ଳୋକଃ—ରାଜାତ୍ମଜେ । କାମ-କଳା-କଳାପେ ।
ନାୟକ—ସଙ୍ଗୀତ ବିଦ୍ୟାରସିକେଽମ୍ବୁଜାକ୍ଷି ।
ହେମପ୍ରଭେ ! ସ୍ଥୂଳ-ନିତମ୍ବ-ବିମ୍ବେ !
ବିମ୍ବୋଷ୍ଠି ! ରମ୍ଭୋରୁ । ମୟି ପ୍ରସୀଦ ।୧
ଗୀତଃ— କୋମଳ କରିଣ କହଇ ବାଣୀ,
"ମୋରେ ପରସନ୍ନ ପ୍ରାଣମିତଣୀ ।
ତୁ ରାଜସୁତା କାମକଳାକର,
ସଙ୍ଗୀତ ବିଦ୍ୟାଳିଳାରେ ଚତୁର,
ପଙ୍କଜନୟନା,
ପୃଥୁନିତମ୍ବିନୀ ହେମବରଣା ।୧।
ଶ୍ଳୋକଃ—ବାଲେଽ ବଲାରନ୍ନ ଦୟାର୍ଦ୍ରଚିତ୍ତେ ।
ପ୍ରାଣେଶ୍ୱରି ! ଶ୍ରୀମତ ! ସୁପ୍ରସନ୍ନେ ।

ଦାସୋଽ ସ୍ମି ତେ ସୁନ୍ଦରି ! ରାଜକନ୍ୟେ !
ପ୍ରାଣାଂସ୍ତୁ ରକ୍ଷଂାକୁରୁମେ ମୃଗାକ୍ଷି ! ।୨।
ଗୀତଃ— ତୁ ଯେ ଅବଳା ରତନ ରମଣୀ
ଦୟାଲୁ ଚିତ୍ତ ହୁଅ ପ୍ରାଣମଣି,
ପ୍ରାଣଈଶ୍ୱରି, ତୁ ଲକ୍ଷ୍ମୀ ରୂପିଣୀ,
ବିମ୍ବଅଧରି ! ରମ୍ଭୋରୁ କାମିନି !
ଟେଗା ହୁଅ ପ୍ରସନ୍ନ,
ମୃଗାକ୍ଷି ! ଦିଅ ମୋତେ ପ୍ରାଣଦାନ" । ୨ ।
ଶ୍ଳୋକଃ—ହେ ପାନ୍ଥ ! ଚିନ୍ତାକୁଳିତାଙ୍ଗମୂଢ଼ !
ନାୟିକାଃ —କିଂ ସ୍ତୌଷି ବାଳାମବଳାଂ କୃଶାଙ୍ଗୀମ୍ ।
ଅର୍ଥଂ ଯଦା ପ୍ରାର୍ଥୟସେ ଭଜେଶଂ
ମୋକ୍ଷଂଚ ଲକ୍ଷ୍ମୀପତିମମ୍ବୁଜାକ୍ଷମ୍ ।୩।
ଗୀତଃ— ଏମନ୍ତ ଦୁଷ୍ଟର ବିନୟ ଶୁଣି,
ମଧୁ କରିକହେ ଇଚ୍ଛାକୃବାଣୀ,
"ଆହେ ପଥିକ ଚିନ୍ତା ଆକୁଳିତ,
ମୂର୍ଖପଣରେ ତୁ କହୁ ଏମନ୍ତ,
ମୁଁ ଅବଳା ଜନ,
ମୋତେ କିମ୍ପା କରୁ ସ୍ତୁତି ବଚନ ।।
ଧନେ ଇଚ୍ଛାଥିଲେ ଭଜ ଶଙ୍କର
ଯାହାର ଆଜ୍ଞାରେ ଅଛି କୁବେର,
ମୋକ୍ଷକୁ ଯେବେ ଅଛି ତୋ ଚିତ୍ତର,
ତେବେ ବେଗେ ଭଜ କମଳା-ବର,"
ଏହା ଦୁଷ୍ଟ ଶୁଣି,
ବୋଇଲା ଶୁଣରେ ରମଣୀମଣି ।୩।

ଶ୍ଳୋକ— ଧନଂ ତ୍ୱମେବାସି ସୁବର୍ଣ୍ଣବର୍ଣ୍ଣେ !
ନାୟକଃ – ସ୍ତ୍ରୀରତ୍ନଭୂତେ ! ମମରତ୍ନଭୂଷା !
ସେବାର୍ପିତେ ! ଭୂପସୁତେ । ପ୍ରସନ୍ନେ
ସୌଖ୍ୟପ୍ରଦୋ ମୋକ୍ଷଦବାସୁଦେବଃ ।୪।

ଗୀତଃ— "ତୁ ହେମ ଗାତ୍ରୀ ସିନା ତମୋର ଧନ,
ସ୍ତ୍ରୀ ରତନ ମୋ ଶିର ମଣ୍ଡନ,
ମୋର ସେବା ଦେଖି ହୁଅ ପ୍ରସନ୍ନ
ତୁ ସର୍ବ ସୁଖଦାନୀ ପ୍ରାଣଧନ,
ସେହ୍ନ ବାସୁଦେବ,
ତାର ମୁକ୍ତିରେ ମୋର କସହେବ ।୪।

ଶ୍ଳୋକ— ପ୍ରିୟେ ସଦା ପୂର୍ଣ୍ଣତରଂ ମନୋହରଂ
ତେ ନିଷ୍କଳଂକଂ ମୁଖଚନ୍ଦ୍ରମଣ୍ଡଳମ୍ ।
ବିଲୋକ୍ୟ ସବ୍ରୀଡ଼ିତୟା ନିଶାପତିଃ
ଗତଃପ୍ରତପ୍ତଃ ଜଳଧେର୍ଜଳାନ୍ତରମ୍ ।୫।

ଗୀତଃ— "ହେ ପ୍ରିୟେ ତୋମୁଖ ପୂର୍ଣ୍ଣଚନ୍ଦ୍ରମା,
କେବେ ନ ଲଭଇ କଳଙ୍କ ସୀମା,
ସର୍ବ ଦିବସେ ଏହ୍ନ ମନୋହର
ଦେଖି ଶଶାଙ୍କ ଲଭିଲା କାତର,
ସନ୍ତାପିତ ମନ,
ତେଣୁ ଜଳ ସିନ୍ଧୁ ଅନ୍ତେ ଗମନ ।" ।୫।

ଶ୍ଳୋକଃ— କିଂ କେତକୀ-ପରିମଳୋତ୍‌ଥିତଗନ୍ଧଲୁବ୍ଧ—
ନାୟିକା:—ଗୁଞ୍ଜଦ ଭ୍ରମଦ୍ ଭ୍ରମର ! ବାଞ୍ଛସି ରନ୍ତୁ ମେତାମ୍
ଯତ୍‌କଣ୍ଟକୈଃ ପରିବୃତାମଭୁଲାମଗମ୍ୟାଂ
ସଂରକ୍ଷିତାଂ ବ୍ରଜସି, ଗଛ ଲତାଂ ସପୁଷ୍ପାମ୍ ।୬।

ଗୀତଃ— "ସ୍ୱଜଚ କେତକୀ ସମୀର ଲଭି
କମ୍ପାଇ ଭୃଙ୍ଗ ହୋଇଅଛୁ ଲୋଭୀ,
ଯୀଡ଼ା ଇଚ୍ଛାରେ ତୁ କରୁ ଗମନ,
କଣ୍ଟକେ ଅଗମ୍ୟ ନ ଘେନୁ ମନ,
ଏ ରହିତ ଜନେ,
ଚଳନ୍ତୁ ଆନ କୁସୁମିତ ବନେ ।" ୬।

ଶ୍ଳୋକ—ଯତ୍‌କେତକୀ କୁସୁମସୌରଭଗନ୍ଧଲୁବ୍‌ଧଃ
ନାୟକ:—ଭୃଙ୍ଗସ୍ତ୍ୱଦର୍ପିତରସୋଦୟୃଚିତ୍ତବୃତ୍ତିଃ ।
କିଂ କଣ୍ଟକଂ ଭବତୁ ଦୁର୍ଗମ ଏବ କମ୍ପା
ଜାନାତୁ ସୁଭ୍ରୂ ବର କୁଞ୍ଜଲତାଂ ନଚେଚ୍ଛେତ୍ ।୭।

ଗୀତଃ— ଏସନ ଶୁଣି ଗୃହେ କହେ ବାଣୀ,
"ଯହୁଁ ଭୃଙ୍ଗ ଲୋଭୀ ପ୍ରାଣମିତଣୀ,
କେତକୀ ସୌରଭ ଗନ୍ଧକୁ ପାଇ,
କି ସେ ଅଗମ୍ୟ କଣ୍ଟକ ମଣଇ,
ସେ ଆନ କୁସୁମ,
ମନେ ଇଚ୍ଛଇ କି ଗୋ ପ୍ରାଣଧନ ।୭।

ଶ୍ଳୋକ—ତ୍ୱଦ୍‌ବର୍ତ୍ତୁଳ ସ୍ଥୂଳ ସୁବର୍ଣ୍ଣକାନ୍ତଂ
ରମ୍ୟସ୍ତନଂ ଶ୍ରୀଫଳଯୁଗ୍ମମେତତ୍ ।
ଦୃଷ୍ଟ୍ୱା ବନେ ଶ୍ରୀଫଳ-ମାତୁଳାଙ୍ଗଂ
ଲଜ୍ଜାଭରଂ ଲମ୍ବିତମେବ ବୃକ୍ଷେ ।୮।

ଗୀତଃ— "ତୋର ବର୍ତ୍ତୁଳ ପୀନ ପୃଥୁ ସ୍ତନ
ସହଜେ ଅଟଇ ସୁବର୍ଣ୍ଣ ବର୍ଣ୍ଣ,
ଏ କାମକେଳି ବେଳ ଶିରୀଫଳ,
ଦେଖି ତରଳ ହୋଇ ଶିରୀଫଳ ।

ସେହୁ ବଚନ ଥାଇ,
ଲତେଙ୍କ କ ବୃକ୍ଷେ ଉଲୁଚି ହୁଅଇ । ୮ ।

ଶ୍ଳୋକ—ହେ କୋକଳାଖିଳ—ଲତାସୁ ଫଳାନି ସନ୍ତି
ନାୟିକା :—ସଂତ୍ୟଜ୍ୟ ତାନି ନନୁ ଚୂତଲତାଂ ସପୁଷ୍ପାମ୍ ।
କିଂ କାଙ୍କ୍ଷସୀହ ରମିତୁଂ ଫଲମେକମ୍ରକାମୋ
ନୋ ହ୍ୟୁଧ୍ୱ ମେ ନୃପତିସେବକଭୀତିରେଷା ।୯।

ଗୀତ:—"ବୋଲଇ ଇଚ୍ଛା ଶୁଣ ପିକବର
ଫଳ.ପୁଷ୍ପ ଲତା ଅଛି ଅପାର,
ତାହା ତେଜି କ ଯେ ରସାଳେ ଆସ,
ଏଥିରେ ଅଧିକ କେବଣ ରସ,
ତେଜ ଏହା ଆଶ,
ନୃପ ସେବକରେ ଭୟ ବିଶେଷ" । ୯ ।

ଶ୍ଳୋକ—ଯଚ୍ଚାତକୋଽନ୍ୟାନି ଜଳାନି ହିତ୍ୱା
ନାୟକ :—ଧାରାଜଳପ୍ରାପ୍ତିମତିଂ କରୋତି,
ତଥା ପିକସ୍ତ୍ୱାଲତା-ଫଳାନି
ରମ୍ୟାଣି ଦୃଷ୍ଟ୍ୱାଽନ୍ୟଫଳାନିଚେଚ୍ଛେତ୍ ? ।୧୦।

ଗୀତ—"ଯେସନେ ରମଣି ! ଚାତକ ପକ୍ଷୀ,
ସର୍ବ ଜଳତେଜି ଘନକୁ ଇଚ୍ଛି,
ତେସନ ହୋଇ କେବଣ କୋକିଳ ,
ରସାଳ ତେଜି କ ଅନରେ ଭୋଳ,
ଏ ମୋହର ମନ,
ତୋହର ବିନୁ ନ ଭାବଇ ଆନ" ।୧୦।

ଶ୍ଳୋକ—ଵିଚକ୍ଷଣେ ! ପଦ୍ମିନି! ପଦ୍ମଗନ୍ଧେ !
ପ୍ରମତ୍ତମାତଙ୍ଗ-ଗତେଽନୁରକ୍ତେ ।
ନୃପାତ୍ମଜେ । ଜୀବୟମାଂ ମନୋଜ୍ଞେ ।
ମନୋଜ-ବାଣ-ବ୍ରଣ-ଖିନ୍ନଗାତ୍ରମ୍ । ୧୧ ।

ଗୀତ—"ସୁଶୀଳା ଅବଲା ତନୁ କୋମଳା,
ନୃପଜା ପଦ୍ମିନି ! ରସକୁଶଳା,
ମତ୍ତ ଦ୍ୱିରଦ ଗମନ । ଅଳସୀ,
ଅନୁରାଗିଣିରେ । କୁଟିଳକେଶି,
କାମ ବାଣେ ଖିନ୍ନ,
ମୋ ଜୀବ ରଖ ରମଣୀ ରତନ" ।୧୧ ।

ଶ୍ଳୋକଃ—ମୃଦ୍‌ଭାଣ୍ଡ ପାତ୍ରେ ସଲିଲଂ ଯଥା ସ୍ୟାତ୍,
ନାୟିକା—ତୃଷାହରଂ ସ୍ୱାଦୁ ସୁଶୀତଳଂ ଚ,
ସୁବର୍ଣ୍ଣ ରତ୍ନୈରପି ନିର୍ମିତେଚ,
ଗତଂ ସୁପାତ୍ରେଽମ୍ବୁ ତଥା ନ କଂ ସ୍ୟାତ୍ । ୧୨ ।

ଗୀତ—"ଶୁଣ କାମୀ-ବର ମୋର ଉତ୍ତର,
ମୃତ୍ତିକା ପାତ୍ରେ ଥାଇ ଯେଉଁ ନୀର,
ତହିଁକି କେନ ତୃଷା ନହରଇ,
ସୁବର୍ଣ୍ଣ ପାତ୍ରେ କି ଅଧିକ ହୋଇ,
ଶୀତଳ ସ୍ୱାଦୁରେ,
ସମାନ ଅଟଇ ବେନି ପାତ୍ରରେ" । ୧୨ ।

ଶ୍ଳୋକଃ—ସଦ୍ଧେମ ରତ୍ନଚୟ୍ ନିର୍ମିତ ସ୍ୱର୍ଣ୍ଣପାତ୍ରେ,
ଗାଙ୍ଗଂ ସୁନିର୍ମଳଜଳଂ ପରମଂ ସୁରମ୍ୟମ୍,
କର୍ପୂର ବାସିତ ତରଂ ସୁଖଦଂ ଯଥା ସ୍ୟାତ୍
କୌପଂ ପୟଃ କିମୁଭବେତ୍ତୁ ତଥାବିଧାନମ୍ ।୧୩।

ଗୀତ:—"ମୃଗ ନେତ୍ରେ ! ହେମ-ମଣି ମିଶ୍ରିଣ,
ଯେ ପାତ୍ରେ ଗଙ୍ଗାନୀର ଥିବ ପୂଣ,
ପବିତ୍ର ନିର୍ମଳ ଶୀତଳ ତର,
କର୍ପୂର ବାସରେ ଅତିରୁଚିର,
ସେ ଯେମନ୍ତ ହେବ,
କୂପ ନୀର କାହିଁ ସେ ସୁଖ ଦେବ । ୧୩ ।

ଶ୍ଳୋକ:—ବଳବସ୍ତ୍ରାବଦ୍ଧ-ସୁସୂକ୍ଷ୍ମମଧ୍ୟେ !
ବିଷୋପହାସ୍ତ୍ୟୌଷଧିମନ୍ତ୍ରରୂପେ ।,
ମନୋଜବାଣୌଘ-ବିଷାର୍ତ୍ତି ଗାତ୍ର—
ମନୁଗ୍ରହଂ ମାଂ କୁରୁ ସମ୍ପ୍ରତି ତ୍ୱମ୍ । ୧୪ ।

ଗୀତ:—"ତ୍ରିବଳୀରେ ମଧ୍ୟ ଦେଶ ଶୋଭନ,
ଉପମା ନାହିଁ ତା ତିନିଭୁବନ,
କନ୍ଦର୍ପ-ବିଷ-ଔଷଧି ରୂପିଣୀ,
ତୁ ପୁଣି ଅଟୁ ତା ସୁରବାରେଣୀ,
ଅନୁଗ୍ରହ କର,
ମାର ଶର ବିଷ ଉଦ୍ଧରି ଧର" । ୧୪ ।

ଶ୍ଳୋକ:—କନ୍ଦର୍ପବାଣାବଶଚିତ୍ତବୃତ୍ତି:,
ନାୟିକା :—କମର୍ଥମେବଂ ବଦସି ସ୍ମୃତିଭିମ୍,
ଜ୍ଞାତବ୍ୟ ମେବଂ ଯଦି ମେ ତୁ ପିତ୍ରା,
କଥଂ ତ୍ୱୟା କାମୁକ ! ଜୀବିତବ୍ୟମ୍ । ୧୫ ।

ଗୀତ:—"କନ୍ଦର୍ପ ବାଣେ ଅବଶ ଚେତନ,
କିମ୍ପା କହୁ ମୋତେ ଆର୍ତ୍ତି ବଚନ,
ଯେବେ ପିତା ମୋର ଶୁଣିବ ଏହା,
ତିନି ଭୁବନେ ନାହିଁ ତୋତେ ଥାହା ।

ତୁ କାମୁକ ଶୁଣ,
କମା ତେଜିବୁ ତୁ ବଅର୍ଥେ ପ୍ରାଣ । ୧୫

ଶ୍ଳୋକଃ— ଜଘାନ ବଣୈର୍ଦଶଭିର୍ଦଶାସ୍ୟ—
(ନାୟକ) ଶିରଂ ସ,ସୀତାହରଣେ ଚ ସମଃ ।
ତ୍ୱଦଙ୍ଗ-ସଙ୍ଗାପ୍ତ ସମାନୁରକ୍ତଂ
ପ୍ରୟାତୁ ମେ ମସ୍ତକମେକମେବ । ୧୬

ଗୀତଃ— ଏବେ ମୋ ବାଣୀ ଶୁଣ ସମାବର,
ସୀତା ଲଗି ଗଲା ତା ଦଶଶିର,
ତୋ ଅଙ୍ଗ ସଙ୍ଗ ଯେବେ ହେବ ମୋର,
ଏକ ଶିର ନାଶେ କ ଡ଼ର ଘୋର,
ଗୋ ପ୍ରାଣ ମିତଣି !
ପ୍ରସନ୍ନ ହୁଅ ନରେଶ ନନ୍ଦିନି ! ୧୬

ଶ୍ଳୋକଃ— ତ୍ୱଦ୍ରୂପ ସନ୍ଦର୍ଶନମାଶୁଦେହି,
(ନାୟକ) ଚକ୍ଷୁର୍ଦ୍ୱୟଂ ମେ ସଫଳଂ କୁରୁଷ,
ତପଃ କୃତଂ ଯେନ ନରେନ୍ଦ୍ରମେନ
ତେନାଙ୍ଗସଙ୍ଗସ୍ତବ ଲଭ୍ୟ ଏବ । ୧୭

ଗୀତଃ— ଏବେତୁ ମୋତେ ଦିଅ ଦରଶନ,
ସଫଳ କର ମୋ ବେନି ନୟନ,
ପୂର୍ବ ଜନ୍ମରେ ଯେହୁ ନର ବର,
କରିଥିବ ତପ ଅତି ଦୁସ୍ତର,
ସେ ତୋ ଅଙ୍ଗ ସଙ୍ଗ,
ଲଭିଣ ହେ ପ୍ରିୟେ କରିବ ରଙ୍ଗ । ୧୭

ଶ୍ଳୋକଃ— ସମ୍ପୂର୍ଣ୍ଣତେ କିଂ ନନୁ ଦର୍ଶନେନ,
(ନାୟିକା) ବିନାଽପି ତୁଷ୍ଟିମ୍ଭରତଭୋଜନେନ,
ସଖଣ୍ଡମାରିଚ ପୟୋଽନ୍ତମେନ,
ସମନ୍ୱିତେନାଽପି ସୁଧୋପମେନ । ୧୮

ଗୀତଃ— ଶୁଣ କାମୀବର ମୋର ଉତ୍ତର,
ଖଣ୍ଡ ମରିଚ ପୟରେ ରୁଚିର
ବର ଭୋଜନ ଏ ସଂସାରେ ସାର,
ଦେଖିଲା ମାତ୍ରେ କି ପୂରେ ଉଦର,
ଭୋଜନ ବିହୀନେ,
ଏଥି କିସ ସୁଖ ବିଚାର ମନେ । ୧୮

ଶ୍ଳୋକଃ— ଭୋଦେବି ! ସୁଭ୍ରୁ କୃଶଶୀତଳ କୋମଳାଙ୍ଗି,
(ନାୟକ) ନାନାବିଭୂଷଣବିଭୂଷିତଗୌରଗାତ୍ରି !
ଆଜ୍ଞାଂ ବିଧେହି କିମହଂ କରବାଣି ହୃଦ୍ୟେ,
ପ୍ରାଣପ୍ରଦେଽଦ୍ୟ ପରିପୂରୟମେଽଭିଳାଷମ୍ । ୧୯

ଗୀତଃ— ଭୋଦେବି ! କୃଶାଙ୍ଗି ସୁନ୍ଦରୀବର,
ଅନେକ ଅଙ୍ଗ ଭୂଷଣେ ରୁଚିର,
ଆଜ୍ଞା ହେଉ ମୋତେ କିସ କରିବି,
ତୋର ବଚନ ଶିରେ ଘେନି ଥିବି
ଗୋ ପ୍ରାଣଦାୟିକା,
କର ପୂର୍ଣ୍ଣ ବାଞ୍ଛା ବରଦାୟିକା । ୧୯

ଶ୍ଳୋକଃ— ବିଦ୍ୟାବିନୋଦରସିକେ ସୁରତୈକପାତ୍ରି !
(ନାୟକ) ସର୍ବାଙ୍ଗ ସୁନ୍ଦରି ! ଧରାଧିପତେଃ ପ୍ରସୂତେ,
ଯଦ୍ୟସ୍ତି ମେଽଦ୍ୟ ସଦୟେନ ଦୟା ତବୈବ,
ଭୁକ୍ତ୍ୱା ପ୍ରାପ୍ତୟେ ସୁରସରିତ୍ସୁ ତନୁଂ ତ୍ୟଜାମି । ୨୦

ଗୀତ:— ସର୍ବାଙ୍ଗ ସୁନ୍ଦରି ନୃପତ ସୁତା,
ଅନଙ୍ଗ ଶାସ୍ତ୍ର ପଠନେ ପଣ୍ଡିତା,
ସଦୟା ହୋଇ ତୁ ଦୟା ନ କଲେ
ନାହିଁ ମୋରଚିନ୍ତା ପରାଣ ଗଲେ,
ଏହି କଥା ଭବ,
ଗଙ୍ଗାରେ ବାହିଲେ ତୋତେ ପାଇବ । ୨୦ ।

ଶ୍ଳୋକଃ— କାଳନ୍ଦୀତଟସନ୍ନିଧାବୁପବନେ
ଗୋପାଙ୍ଗନାଲିଙ୍ଗନ—
କ୍ରୀଡ଼ାକର୍ଷଣଚୁମ୍ବନାଦିରୁଚିତଃ
ସଂସେବିତୋ ବେଣୁନା,
ସ୍ଥିତ୍ୱା କଳ୍ପମହୀରୁହାଗ୍ରିତଲତା—
ବାସେ ସୁପୁଷ୍ପାନ୍ୱିତେ,
ନାନା ଭୂଷଣ ଭୂଷିତୋ ବ୍ରଜପ୍ରିୟଃ
କୃଷ୍ଣଃପ୍ରସନ୍ନୋଽସ୍ତୁ ମାମ୍ ।

ଗୀତ:—କାଳନ୍ଦୀ ତଟ ପାଶ ଉପବନେ
ଗୋପାଙ୍ଗନା—କେଳିରସ ବିଧାନେ,
ଚୁମ୍ବନ ଆଶ୍ଳେଷ ମହାମଧୁର
ମୃଦୁ ମୃଦୁ ବେଣୁ ନାଦେରୁଚିର,
ସେ କୃଷ୍ଣଚରଣ,
ନୃପଧନଞ୍ଜୟ ଭଞ୍ଜ ଶରଣ । ୨୧ ।

# ସପ୍ତମ ଛାନ୍ଦ

ରାଗ—କାମୋଦୀ

ଶ୍ଳୋକଃ—ସୁରଷଙ୍କେତେଷବନୋଦସୌଧଃ

(ନାୟିକା)—ସୁଦୁର୍ଗମୋଽନ୍ତଃପୁରଗୃରିଭିଶ୍ଚ,
ସଖୀଜନୈରିଙ୍ଗିତହେତୁଜ୍ଞୈଃ
କଥଂ ହି ତେ ବାଞ୍ଛିତସିଦ୍ଧିରସ୍ତୁ ।

ଗୀତ—ଶୁଣ ରସିକବର ଏ ମୋହର ଉତ୍ତର
ଏ ଚନ୍ଦ୍ରଶାଳାପୁର ପୁଣ,
ଅନ୍ତଃପୁରେ ସଞ୍ଚାରୀ ରଜାର ଆଜ୍ଞାକାରୀ
ଏ ଜନ ମାନଙ୍କେ ଭୀଷଣ ହେ,
କାମୀ-ବର,
ସଖୀଜନ ଇଙ୍ଗିତ ଜ୍ଞାତା (୧)
ଏଥି କେସନେ ତୋର, କାମନା ସିଦ୍ଧି ହେବ
ମୁଁ ହେଲେ ତୋର ପ୍ରସନ୍ନତା ହେ ।୧। (୨)

ଶ୍ଳୋକଃ—ପ୍ରସନ୍ନତାୟାଂ (୩) ତ୍ୱୟି ରାଜକନ୍ୟେ !
(ନାୟିକା)—ଭବେତ୍ ହ୍ୱସିଦ୍ଧିର୍ମମ ବାଂଛିତସ୍ୟ,
ଅଭୀଷ୍ଟଦା—କଳ୍ପଲତେବ ଭୂମି
ସୁକେଶି । ଚିନ୍ତାମଣିରେବ କଂତ୍ୱମ୍ । (୩)

---

(୧)—ସଖୀଜନ ଇଙ୍ଗିତ ଜାଣ (ଖ)
(୨)—ମୁଁ ହେଲେ ତୋହରେ ପ୍ରସନ୍ନ ହେ (ଖ)
(୩) ପ୍ରସାଦତାୟାଁ (ଖ)

ଗୀତଃ—ଯେବେ ହେବୁ ପ୍ରସନ୍ନ ମୋତେ ରମାରଞ୍ଜନ
ତେବେ ଲଭିବା ସର୍ବ ସିଦ୍ଧି,
ମୋର ବାଞ୍ଛିତ କଳ୍ପ— ତରୁ ତୁ ହିଁ ରତ୍ନାବୁ
ତୁ ମୋର ସର୍ବ ସୁଖନିଧିରେ,
ପ୍ରାଣପ୍ରିୟା !
ତୁ ଚିନ୍ତାମଣି ଅଟୁ ମୋର,
ମୁଁ ଦାସ ଜନ ମୋରେ ଏ ସ୍ନେହ ରଖିଥିବୁ
ଜାଣ ମୁଁ ତୋହରି କୋୟର ରେ ।୨।

ଶ୍ଳୋକଃ—ମୃଦୁଲ-କନକ-କାନ୍ତାଂ ସ୍ୱାଦୁ (୧)ସୌରଭ୍ୟରମ୍ୟାଂ
(ନାୟକ)ଃ—ବଦନକମଲମଧ୍ୟେ ନେତ୍ରମଦ୍ଧ୍ୱିରେଫାମ୍,
ତବ କମିହ ସମୀକ୍ଷ୍ୟ ବ୍ରୀଡ଼ୟା ପଦ୍ମବୃନ୍ଦଃ
ସରସି ସଲିଲପୂର୍ଣ୍ଣେ ମର୍ତ୍ତୁକାମଃ ପ୍ରବେଶଃ ।୩।

ଗୀତଃ—ମୃଦୁକନକକାନ୍ତ ସ୍ୱାଦୁସୌରଭରମ୍ୟ
ବଦନ କମଳ ତୋହର,
ଦେଖି ସରସିରୁହ ଲଭି ଲଜ୍ଜା ସମୂହ
ହୋଇଲା ଅଧିକ କାତର ରେ,
ରମାବର !
ସଲିଳ ପୂର୍ଣ୍ଣ ସରୋବର
ମଧ୍ୟରେ ମରିବାତେ ମନେ ଏହି ବାଞ୍ଛାରେ
ପ୍ରବେଶେ ହୋଇଲା ତତ୍ପର ରେ ।୩।

---

(୧) ସ୍ନାନ (କ)

ଶ୍ଳୋକଃ—ଜ୍ୟୋତ୍ସ୍ନାଦବଂ ଗଚ୍ଛନ୍ତୁ ବାଂଚ୍ଛିତସ୍ୟ
(ନାୟିକା)—ସିଦ୍ଧିର୍ଭବେତ କର୍ମଫଳେନ (୧) ପୁଂସଃ,
ପୁନଃପୁନର୍ବାକ୍ୟମଧୀର ଲୁବ୍ଧଃ
ବୁଭୁକ୍ଷିତଃ କଂ ଦ୍ୱିକରେଣ ଭୁଙ୍କ୍ତେ । ୪ ।

ଗୀତଃ—ହେ ପରଦେଶୀଗୃହ । ମନେ ନୁହ ଉଚାଟ
ଚନ୍ଦ୍ର ଚନ୍ଦ୍ରିକା ନଭେ ଯାଉ,
ପୂର୍ବ କର୍ମରଫଳେ ବାଞ୍ଛା ଲଭନ୍ତି ନରେ
କମା ଅଧୀର ହୋଇ କହୁରେ,
କାମାତୁର,
ଏହା ବଚନର ମନେ ଭୁହି,
ଦେଖ, ଭୋକିଲ ଜନ, ଅତ ଆତୁର ହେଲେ
ଦେନି ହସ୍ତରେ ନକ ଖାଇରେ । ୪ ।

ଶ୍ଳୋକ୍ୟ—ପ୍ରାଣାଧିକେ ! ପ୍ରିୟତମେ ! ତବରୂପ ରଜ୍ଜୁ—
(ନାୟକ)ଃ—ବନ୍ଧୋଽସ୍ମି ସମ୍ପ୍ରତ କଥଂ ଭବନେ ବସାମି,
ସ୍ୱଙ୍ଗାତ୍ମଜେ । ତ୍ୱମସି ସୁନ୍ଦରି ! ନର୍ମରୂପା
ତ୍ୱତ୍ପ୍ରୀତିରମ୍ୟସୁରତୈର୍ମମ କାର୍ଯ୍ୟସିଦ୍ଧିଃ । ୫ ।

ଗୀତଃ—ଶୁଣ ଅଧିକ ଭୁହି ମୋର ପ୍ରୀତ ଦାୟିନ
ତୋ ରୂପ ଗୁଣେ ବନ୍ଧା ହେଲି,
ଏବେ କେମନେ ହୋଇ ଗୃହେ ରହିବ ସହି
ମୋହରନର୍ମ ନବ ବାଳରେ,

(୧) ବଳେନ (ଖ)

ପ୍ରାଣପ୍ରିୟା
ତୁ ରଜକୁମାରୀ ସୁନ୍ଦରୀ,
ତୋର ପ୍ରୀତରେ ରମ୍ୟ ସୁରତ ଦାନେ ମୋର
ସକଳ କାର୍ଯ୍ୟ ସିଦ୍ଧିକାରୀରେ । ୫ ।

ଶ୍ଲୋକଃ — ଚନ୍ଦ୍ରାନନେ ! ବର୍ତ୍ତୁଳ—ତୁଙ୍ଗ—ତାଳ-(୧)
(ନାୟକ):—ରମ୍ୟସ୍ତନେ । ସ୍ୱେର—ସୁଧାବ୍ଜନେତ୍ରେ !
ଶଚ୍ୟାକନୋଦେ ସୁବ୍ରତଲକ୍ଷଣେ । ତ୍ୱଂ
ସ୍ତ୍ରୀରତ୍ନଭୂତେ ! ମୟି କ୍ଷେ । ପ୍ରସୀଦ । ୬ ।

ଗୀତଃ—ଚନ୍ଦ୍ର ବଦନପ୍ରିୟା ମୋରେ ହୁଅ ସୁଦୟା
ବର୍ତ୍ତୁଳ ତୁଙ୍ଗରମ୍ୟସ୍ତନା,
ବିକଚ ପଦ୍ମ ନେତ୍ରି, ଦହ୍ର କନକ ଗାତ୍ରି
ସକଳ ବଦାବ୍ରତକ୍ଷଣୀ ରେ,
ବାଳାରତ୍ନ,
ମୋହରେ ହୁଅ ତୁ ପ୍ରସନ୍ନ,
ନିଷ୍ଠୁର ପଞ୍ଚବାଣ ଘେନୁଅଛି ପରାଣ
ତୋ ପାଦେ ପଶିଲି ଶରଣରେ । ୬ ।

ଶ୍ଲୋକଃ—କାମାଭିରାମ । କାମାର୍ତ୍ତି ।
(ନାୟିକା)—ପ୍ରୀତ ବିଶ୍ରମ୍ଭ ଭଜନ !
ସାର୍ଦ୍ଧଂ (୨) ସଖ୍ୟା ସମାଗଚ୍ଛ
ସ୍ୱଗୃହମାର୍ଗେଣ ନ୍ୟବୁପଥ୍ୟକ୍ । ୭ ।

---

(୧) ତୁଲ୍ୟ (ଙ)
(୨) ସାକମ୍ (ଙ)

ଗୀତଃ- ଏସନ ଗୂଢ଼ ବାଣୀ କରୁଣରସଧାମଣି
ଶୁଣି ସଲଜ୍ଜ ମନକଲ,
ଚଞ୍ଚଳ ମନେ ତାର ଦହିଲ (୧) ପଞ୍ଚଶର
ଦଧ୍ଯାୟାଦ୍ଧି ଚିନ୍ତା ତେଣୁ ହେଲ ସେ
ସମାବର,
ଗୂଢ଼ରେ ତେଜିଣ ନଗ୍ର,
ସୁମରି ପୂର୍ବକେଳି ସଦୟ ହୋଇ ବାଳୀ
କହଇ ହୋଇଣ ହରଷ ସେ ।
ନବୀନ ଫୁଲ ଶର, ସମ ସ୍ୱରୂପ ତୋର
କାମର୍ତ୍ତ ମୋ ପ୍ରୀତଭାଜନ
ସଖୀ ସଙ୍ଗତେ ତୁହି ଅନ୍ୟ ବେଶକୁ ବହି
ଆସ ଆନ ମାର୍ଗେ ବହନ ହେ,
ସୁବାଚର,
ତତକ୍ଷଣେ ସ୍ତ୍ରୀ ବେଶ ହୋଇ.
ସଖୀ ସଙ୍ଗତେ ତାର, ଆନ ମାର୍ଗରେ ଯାଇ
'ଇଚ୍ଛା'ର ସନ୍ନିଧେ ମିଳଇ ସେ, । ୭ ।

ଶ୍ଳୋକଃ—ଅଦ୍ୟୈବ ପୁଣ୍ୟବିବସେ ମମ ଦେବ୍ବ ! ବାଳେ !
(ନାୟକ)—ତ୍ୱତ୍ପାଦପଙ୍କଜଯୁଗଂଚ ବିଲୋକ୍ୟତେ ଯତ୍,
ରମ୍ୟାତପୀନକଚଯନସ୍ତନଟେସବକ ମାଂ
ମୁଗ୍‌ଧେ ବିଧେହି ସଦଦ୍ୟୈବଧରଯୀଢୁଲୁବ୍‌ଧମ୍ । ୮ ।

---

(୧) ଭେଦଲ(ଖ)

ଗୀତ:—ଆଜ ମୋହର ପୁଣ୍ୟ ଦିବସ ଚନ୍ଦ୍ରମୁଖି !
ତୋ ପାଦ ପଦ୍ମକୁ ଦେଖିବା,
ମଞ୍ଜୁଳ ପୀନସ୍ତନ— ସେବକ କର ତଥି
ଉପରେ ମାର୍ଜନା ବାନ୍ଛିବାରେ,
ହରିଣାକ୍ଷି !
ମୁଁ ତୋ ଅଧରମଧୁ ଲୋଭୀ
ଦୟାଳୁ ଚିତ୍ତହୋଇ ମୋର ବେଦନା ହର
ପୂର୍ବ ତପରେ ଅଛି ଲଭିବେ ।୮।

ଶ୍ଲୋକ:—ଘୃଣାକ୍ଷରସ୍ୟୈବ ବିଧାନ ମେତଦ୍—
ବିନିର୍ମିତା ତ୍ୱଂ ନୃପଜେ ! ବିଧାତ୍ରା,
ବିଧେସ୍ତୁ ଜାନାମି ସୁଚକୌଶଳତ୍ୱଂ
ସରୂପିତେୟଂ ଯଦି ଦୃଶ୍ୟତେଽନ୍ୟା ।୯।

ଗୀତ:—ଘୃଣାକ୍ଷର ପରିଚୟ୍ୟ କରିଣ ନୃପ ସୁତା
ନିର୍ମାଣ କଲା ତୋତେ ଧାତା,
ଆଉ ଯେବେ ତୋ ସମ ନାରୀ ସୃଷ୍ଟିରେ ଜଣେ
ନିର୍ମାଣ କରି ସେହୁ ଥାନ୍ତା ତେ,
ପଦ୍ମଲାକ୍ଷୀ,
ତେବେ ତା କୁଶଳତା-ପଣ,
ଜାଣିଣ ପରଶଂସା କରନ୍ତେ ଜନେ ତାକୁ,
ବୋଲନ୍ତା ସେହୁ ଯେ ନିପୁଣରେ ।୯।

ଶ୍ଲୋକ:—ଉକ୍ତଂ ତ୍ୱୟା ମଦନ—ସୁନ୍ଦର ! ସର୍ବମେତ—
(ନାୟିକା)—ସ୍ୱଂଦର୍ଶନାୟ ନନୁ ସଂଭ୍ରତ ତୈବ ଦୃଷ୍ଟମ୍,

ଗଚ୍ଛ ସ୍ୱକୀୟଂ ଭବନଂ ତ୍ୱରିତଂ ଚ ପଶ୍ୟ
ପ୍ରାଣେଶ୍ୱରୀଂ ତବ ମନୋରଥ ସିଦ୍ଧିରସ୍ତୁ ।୧୦।

ଗୀତ—ଅଭିନବ ମଦନ ପ୍ରତାପ ମୋତେ ମାଗିଣ
ଥିଲା କାଞ୍ଛିତ ଦରଶନ,
ଏବେ ସେ ଦରଶନ ହୋଇଲା ତୋର ପୂର୍ଣ୍ଣ
ବେଗେ ତୁ ଚଳ ସେ ସଦନ ହେ,
ଯୁବାମଣି,
ଯାଇ ତୋ ଦେଖ ପ୍ରାଣ ପ୍ରିୟା
ସେ ତୋର ମନୋରଥ ସିଦ୍ଧି କରାଇବ
ହୋଇଣ ତୋ ରସେ ସୁଦୟା ରେ ।୧୦।

ଶ୍ଳୋକଃ—ତ୍ୱମେବ ମେ ଭୂପତଳେ ନିବାସଃ
(ନାୟକ)—ତ୍ୱମେବ ଜୀବେଶ୍ୱରି ! ନାସ୍ତି ମେଽନ୍ୟା,(୧)
ପ୍ରସନ୍ନତା ତେ ସକଳାର୍ଥସିଦ୍ଧି-
ର୍ମନୋଜସମ୍ମୋହିନି ! ମାମବତ୍ୱମ୍ ।୧୧।

ଗୀତ—ତୁ ସେ ନୃପତି ବାଳା ମୋ ଜୀବ ନିକେତନ,
ତୁ ମୋର ପ୍ରାଣର ଈଶ୍ୱରୀ,
ତୋ ବିନୁ ଆରେ ବାଳା ଅନେକ ରତି ଲୀଳା
ତୁ ମୋର କଣ୍ଠରତ୍ନ ସରିରେ,
ମଦାଳସି !
ପ୍ରସନ୍ନ ଯେବେ ହେଲୁ ମାନି !
ମୋର ସକଳ ଇଷ୍ଟ ସିଦ୍ଧି କ ଲଭିଲଇଁ
ରଖ ତୁ ଅନଙ୍ଗମୋହିନି ରେ ।୧୧।

(୧)—ପ୍ରାଣେଶ୍ୱରୀ ତ୍ୱଂମମ ନାସ୍ତି ଗୃହ୍ୟା(ଖ)

ଶ୍ଲୋକଃ—ତବ ନଶିତକଟାକ୍ଷକ୍ଷିପ୍ତବାଣବ୍ରଣାର୍ତ୍ତିଂ,
(ନାୟକ)—ମମ ତନୁ ମନୁରକ୍ତେ ଶାବୟସ୍ୱୌଷଧେନ,
ତ୍ୱଦଧର-ମଧୁପାନଂ କ୍ଷେପୟେତ୍ ନକାଽପରେ ବା
ସ୍ତନଜଘନବିଲଗ୍ନାଲିଙ୍ଗନଂ ଗାତ୍ରଲେପମ୍ ।୧୨।

ଗୀତ—ମୋର ତୀକ୍ଷ୍ଣକଟାକ୍ଷ ବ୍ରଣ ସମ୍ଭୂତ ଘାତେ
ତନୁ ହେଉଛି ମୋର ବ୍ରଣ
ତୁ ଅନୁରାଗୀ ମୋର ଉଚିତ ଔଷଧରେ
ଦେଇଣ କର ତୁ ଶରଣରେ
ପିକଭାଷି ।
ତୋ ମଧୁ ପାନ ଅନ୍ତ କ୍ଷେପ,
ସ୍ତନ ଜଘନ ନାନା ବିଳାସ ଦେଇ ମୋରେ
କର ତୁ ଗାତ୍ରରେ ଲେପନ ରେ ।୧୩।

ଶ୍ଲୋକ—କ୍ରୀଡ଼ାର୍ଥଂ ମଦନାତୁରା । ସମୁଦିତାଃ ପଞ୍ଚ-ଲଜ୍ଜାଭୟା
କାନ୍ତଂ କେଳିନିକେତନଂ ନୃପସୁତା ଜ୍ଞାତ୍ୱା ଶୁଭଶଯ୍ୟୋପରି,
ସଂସ୍ଥାପ୍ୟାଗୁରୁଚନ୍ଦନଂ ସୁକୁସୁମଂ କର୍ପୂରପୂଗଂ ପୁରେ-
ଦତ୍ତ୍ୱା ପୀଡ୍ୟ ସଖୀକରଂ ପ୍ରହସିତା କଂଚେନ ଦୂରୀକୃତା
।୧୩।

ଗୀତ—ଏ ଯେ ନୃପକୁମାରୀ ମଦନ ଶରେ ଝୁରି
ମିଶାଇ ଲଜ୍ଜା ଭୟ ବେନି,
କାମେ ହୋଇ ଆତୁର ଧରି କର ସୁନ୍ଦର
ପଲଙ୍କେ ନେଲା ଚନ୍ଦ୍ରାନନୀ ଯେ,
ସୁରୁକେଶୀ,

କର୍ପୂର କସ୍ତୂରି ଚନ୍ଦନ,
କୁସୁମ ମାଳା ସଖୀ କରେ ସ୍ନେହରେ ଦେଲା
ଜାଣି ସେ ଚଳାଲା ବହନ ।୧୪।
ଶ୍ଳୋକ—ସବ୍ରୀଡ଼ାଂ ହି ବହିର୍ଗତାଂ ପ୍ରିୟସଖୀଂ ଦୃଷ୍ଟ୍ୱା ସ କାମାତୁର
ସ୍ତନ୍ୟାଃ ପୀନଘନସ୍ତନୋରୁଜଘନାଦାକୃଷ୍ୟ ଚୀନାଂଶୁକମ୍,
କୃତ୍ୱାଲିଙ୍ଗନଚୁମ୍ବନଂ ନୃପଭୁବଃ ପୀତ୍ୱାଧରଂ ତାଡୟନ୍
ମର୍ଦ୍ଦନ୍ ଦନ୍ତନଖକ୍ଷତାନି କୁରୁତେ ଯୋଭଂ ଚ
ନାଭ୍ୟାସ୍ତତଃ ।୧୪।
ଗୀତ:—ଦେଖିଲା ପ୍ରିୟସଖୀ ଜନେ ଅନ୍ତର ହେଲେ
ଲଜ୍ଜିତମତ୍ତ ସ୍ୱମାବର,
କାମେ ଆତୁର ହୋଇ ରସିକବର ତହିଁ
ରମାଅଂଶୁକ କଲା ଦୂର ସେ,
ଚୀନଚେଳା,
ହରନ୍ତେ ଦଣେ ସର୍ବ ଅଙ୍ଗ
ପୀନ ବର୍ତ୍ତୁଳ ସ୍ତନ ନାଭି ଉର ଜଘନ
ଦେଖି ତା ବର୍ଦ୍ଧିଲା ଅଙ୍ଗ ସେ ।୧୫।
ଆଲିଙ୍ଗନ କରିଣ ଜାନୁରେ ବସାଇଣ
ଚୁମ୍ବିଲା ସୁନ୍ଦରୀ ଅଧର
ତୀକ୍ଷ୍ଣନଖେ ଅଙ୍କିତ ସୁତୁଙ୍ଗ ପୟୋଧର
ଦାନ୍ତ ଦଂଶନ ଗଣ୍ଡପର ସେ,
କାମିବର
ସୁର କେଳିବିଧାନ ସେତେ,
ରଚନା କରି ତାର ମନ ସନ୍ତୋଷ କଲା
କବି କହିବ ଅବା କେତେ, ସେ, ।୧୬।

ଶ୍ଳୋକ—ପ୍ରାଦର୍ଶକ୍ତଘନସ୍ଥଳଂ ସ୍ତନଯୁଗଂ ଲଜ୍ଜାଭରବ୍ୟାକୁଳା
ବାଲା ଯା କବରୀସ୍ଥପୁଷ୍ପବଳସନ୍ମାଳାହୃତେ ଦୀପକେ
ଚଞ୍ଚଦ୍ରତ୍ନସୁତେଜସା ସମଭବତ୍ ଦୀପୋଽପ୍ୟମନ୍ୟତ୍ ସ୍ଫୁଟଂ
ଦୃଷ୍ଟ୍ୱା କାନ୍ତିଗୁଣାଧିକଂ ସ୍ମିତମୁଖୀ
ତନ୍ୟକ୍ତଲଜ୍ଜାଭବତ୍ । ୧୫ ।

ଗୀତ—ସ୍ତନ ଭର ଜଘନ ଦେଖି ସଲଜ୍ଜାଭର
ହୋଇଲା ରମଣୀ ସେ ସତୀ
କବରୀରୁ କୁସୁମ-ମାଳା ଯୋଗୁଣ ଦୀପେ,
ମାଇଲା ଚତୁରୀ ରମଣୀ, ସେ,
ଗୃହବର ।
ରତ୍ନ ମାନଙ୍କେ ଅଲେକତ
ଅଙ୍ଗ ପ୍ରକାଶ ଦେଖି ହୋଇ ସେ ସ୍ମିତମୁଖୀ
ଲଜ୍ଜାକୁ ତେଜିଲା ତ୍ୱରିତ ସେ ।୧୬।

ଶ୍ଳୋକଃ (ନାୟକ)—
ସଦ୍‌ଯୋଗ୍ୟଂ ସୁମନୋହରଂ ହି ମଧୁରାଳାପଂ ଚଳତ୍‌ପାଦୟୋ
ସ୍ତନନ୍ତଂ ମମ ନୂପୁରଦ୍ୱୟମିଦଂ ସାନ୍ଦ୍ରଂ ରଣତ୍‌କାରତଃ,
ପଶ୍ୟ ତ୍ୱଂ ସୁରତୋପଗୂଢରକଥନଂ ପ୍ରୋଚୈଃ କରୋତ୍ୟାଶ୍ରିତଃ
ବସ୍ତ୍ରାସାନ୍ତୁ ବହିଷ୍କୃତଂ ଫଳତ ତତ୍ କଯୈବ ବଶ୍ୟସ୍ୟତେ ।୧୭

ଗୀତ—ବୋଲଇ ସୁବାମଣି ଶୁଣପ୍ରାଣ ମିତଣି ।
ମୋତାରେ ଅନୁଗ୍ରହ କର
ପ୍ରକାଶ କର ଏବେ ବିପରୀତ ଶୃଙ୍ଗାର
ଏତେଣି ମୋ ଜୀବନ ଉଦ୍ଧର ରେ,

କୋମଳାଂଗି !
ମୁଖର ଏ ପଦମଞ୍ଜୀର
ବୋଲଇ ରଣ ରଣ ହୋଇ ଅତି ଚଞ୍ଚଳ
ତେଣୁ ଏହାକୁ ସ୍ଥିର କର ରେ ।୮।

ଶ୍ଳୋକଃ— ଶୃଂଗାରମେତତ୍ ଦ୍ୱିପଗାଜ ମନ୍ଦ
ସମାଚରନ୍ତ୍ୟାଃ ସୁଭଗେଽତଲେଲେ । (୧)
ମନ୍ୟେ ଶଶୀକୁଣ୍ଡଳ-ଛଦ୍ମରୂପୋ
ଗଣ୍ଡସ୍ଥଳଂ ଚୁମ୍ବତି ତେ ସକାମୀ ।୦୬।

ଗୀତ—ମଧ୍ୟ ସ୍ଥାନରେ ଥାଇ ଗୋପିତ ଭାବ ହୋଇ
ସମସ୍ତ ଗୁଣରେ ଶୋଭନ
ରସେ ମଞ୍ଜୁଳ ବାଣୀ କାମକେଳି ଦରଣୀ
ତାକୁ କହନ୍ତି ଘନ ସ୍ତନ, ରେ,
ସରୋଜାକ୍ଷି !
ନୋହେ ସେ ସହଜ ମୁଖର,
ମୁଖର ମାର ରସେ ଉଦ୍ଦୀପନ କାରିଣୀ
ଏଣୁ ତା ମୁଖର ବେଷ୍ଟର, ରେ, ।୧୯।

ଶ୍ଳୋକଃ— ଉତ୍ତୁଙ୍ଗସ୍ତନଯୁଗ୍ମପୀଡ଼ିତ-
ଦୃଢ଼ାଶ୍ଳେଷେଣ ତେଽଦ୍ୟପ୍ରିୟେ
ଦନ୍ତାଘାତନଖକ୍ଷତୈଃ
ସୁମଦ୍ଭୁତଲାପୈଶ୍ଚ ଚୁମ୍ବୈ ସ୍ତ୍ରକୈଃ,

(୧)—ସୁରତେଚ୍ଛ ଲେଖକଃ (ଖ)

ନାନାବନ୍ଧବଚନୈଃ ଶବ୍ଦାଂସ୍ତ୍ୱଂ କୁରୁଷେ (୧)
ଚୈତତ୍ କୃତେ ସାର୍ଥକଂ
ଗାନଂ ମେ ପୁରୁଷାପ୍ରିତେନ ହର ଭୋ (୨)
କନ୍ଦର୍ପବ ଶବ୍ୟଥାମ୍ ।୧୮।

ଗୀତଃ—ବିପରୀତ ଶୃଙ୍ଗାରେ କରନ୍ତେ ସମାବର
ତାଙ୍କ ଯୁଗଳ ଚଞ୍ଚଳ
କମ୍ପେ ସ୍ତନଯୁଗଳ ଦୋଳନ୍ତ ମୋତିମାଳା
ତରଳ ନୟନ ନିଶ୍ଚଳ ସେ
ରାମାମୁଖ
ଶ୍ରମସ୍ୱେଦରେ ଶୋଭାପାଇ
ଯେସନେ ପୂର୍ଣ୍ଣଶଶୀ ଅମିୟ ଉଦୟ ମିଶି
ମୋତିକଳାପ ବରଷଇ ରେ ।୨୬।

ଶ୍ଳୋକଃ— ଯଦବ୍ୟକ୍ତଂ ମୁଖେଽପି ନିର୍ଗୁଣମିଦଂ ପାଦାହତଂ କର୍କଶଂ
(ନାୟକ) ନିଃଶବ୍ଦଂ ଭବତୀହ ନୂପୁରଯୁଗଂ ଦ୍ୱୈତତ୍ କୃତେ ମେ ପ୍ରିୟେ
ଗୋପ୍ୟସ୍ଥା କଟିମେଖଳା ଘନରବଂ ବାଞ୍ଛାପୟତ୍ୟାଶ୍ରିତାନ୍
ମଧ୍ୟସ୍ଥାନ୍ତ୍ୟଧୂତସ୍ୱନୈ ଗୁଣବତୀ ସୁପ୍ରୀତକାରିଣ୍ୟପି ।

ଗୀତ—ଶୁଣଗୋ ନୃପତିସୁତା ଶୁଣ ମୋର ବିନୟ
ସଂସାରେ ସେହି ସୁଖ ଧନ୍ୟ
ଯେ ତୋ ଅଧରୁ ମଧୁ ପାନ କରିଛି ପ୍ରିୟା
କହି ନୁହଇ ତାର ପୁଣ୍ୟରେ,
ଶୁଦ୍ଧଦନ୍ତ !

---

(୧)—ବଚନୋଦତୋଷ୍ଣକରସୈଃ (ଖ)
(୨)—ଶମିତା (ଖ)

ସେହି ନୟନେ ସେ ନୟନ,
ବାସ ନ ଥିବା କାଳେ ଯେ ତୋ ସର୍ବ ଅଙ୍ଗକୁ
କରିଣ ଅଛି ବିଲୋକନ ରେ, ।୨୧।

ଶ୍ଳୋକଃ—ତଦ୍ ବକ୍ତ୍ରଂ ରୁଚିରାନନେ !
ଯଦଧରାଦଦ୍ୟାମୃତଂ ସ୍ୱାଦିତଂ
(ନାୟକ) ଯାଭ୍ୟାଂତେ (?)ନୟନେ ନବ୍ରୋଲରହିତଂ
ସର୍ବାଙ୍ଗମାଲୋକ୍ୟତେ,
ତୌ ହସ୍ତୌ ଜଘନସ୍ଥଳଂ ସ୍ତନଯୁଗଂ
ସଂସେବ୍ୟମାନୌ ଚ ତୌ
ତଦ୍‌ଗାତ୍ରଂ ତପସାର୍ଜିତ ରତିସୁଖଂ
ପ୍ରାପ୍ତାଙ୍ଗ ସଙ୍ଗଂ ଯତ୍ ।୨୦।

ଗୀତଃ—ସେ ବେନି ହସ୍ତକୁ ଯେ ହସ୍ତ କରିଣ ମୁହିଁ
ପ୍ରଶଂସା କରିଣ ଜୀବନ
ଏ ତୋର ପୀନସ୍ତନ, ଉରୁଯୁଗ୍ମ ଜଘନ
ଏସର୍ବ କରିଛି ସେବନ ରେ,
କୁନ୍ଦଦନ୍ତ ।
ତାହାକୁ ବୋଲ ସେ ଶ୍ରବଣ
ତୋର ମୃଦୁ ମଧୁର ବାଣୀ ପଙ୍କ୍ତି ରୁଚିର—
ଯୁକ୍ତୁ ସେ କରିଛି ଶ୍ରବଣରେ ।୨୨।

ଶ୍ଳୋକଃ—ଦୃଢିବ୍ୟ (୧) ପୀନସ୍ତନଯୁଗ୍ମମାସ୍ୟଂ,
(ନାୟକ—)ଭ୍ରୈଚାରୁରମ୍ୟଂ ଜଘନସ୍ଥଳଂ ଚ,
ଭ୍ରତ୍ପୀବରଂ ରମ୍ୟନିତମ୍ବବିମ୍ବଂ
କାଣୀତ (୨) ଧନ୍ୟଃ କଥମବଲୋକ୍ୟତେ ।

---

(୧)—ଦୃଷ୍ଟ୍ୱା (ଖ)
(୨)—କ୍ଷୀଣେଚ (ଖ)

ଗୀତ —ଶୁଣ ଆରେ ସୁଜନୁ ଯେ ତନୁ ଜାଣ ତନୁ
ଏ ତୋର ତନୁ ତନୁଷ୍ଣଙ୍କ
ଲଭନ୍ତି ମର୍ତ୍ତ୍ୟପୁରେ ନାନା ବିନୋଦଭରେ
ଇତର ମନେ ସୁର ସଙ୍ଗରେ,
ବାଳାଗନ୍ଧ,
ସେ ନାସା ନାସା ବୋଲି ଜାଣି
ଯେ ତୋର ପଦ୍ମମୁଖ ଗନ୍ଧ ଆଘ୍ରାଣ କର
ଅଛି ଶୁଣ ପଦ୍ମଣମଣି, ରେ ।୨୩।

ଶ୍ଳୋକଃ — ନଷ୍ଟାବଶେଷୋ ରମଣାଭିଳାଷଃ
(ନାୟିକା —ସିଦ୍ଧସ୍ତବାଽଽପୀତ୍ କାମତଃ ପରନ୍ତୁ,
ଯଥା ନ ଜାନାନ୍ତ ଜନୋଽପି କଶ୍ଚି —
ଦ୍ୱଚ୍ଛୟ୍ୟଥା ଯାହି ପୁନସ୍ତ୍ୱମେହି ।୨୪।

ଗୀତ —ନିଶା ହୋଇଛି ଶେଷ ଶୁଣ ହେ କାମିବର
ହେଲି ତୋ ମନୋରଥ ପୂର୍ଣ୍ଣ,
ଯେମନ୍ତେ ପୁରଜନ — ମାନେ ହେ ନ ଜାଣିବେ
ସେରୂପେ କର ତୁ ଗମନ ହେ,
ପ୍ରାଣେଶ୍ୱର
ତୁମ୍ଭେ ତ ସୁଜାଣ ଚତୁର
ମୁହିଁ ଜାଣ ଅବଳା ନୃପତ ଅନ୍ତଃପୁରୀ
ଫେଣୁ ମୋ ସଶଯ୍ୟ ମନର ହେ ।୨୪।

ଶ୍ଳୋକଃ— ତବାସ୍ତୁ ମେଽନୁଗ୍ରହ ଏଷ ଦେବ ।
(ନାୟକ)—ଦ୍ୱଦଙ୍ଗସଙ୍ଗାତ୍ ସଫଳଂ ହି ଜନ୍ମ,
ନବପ୍ରିୟାୟା ବିରହାସିଲନ —
ମନୋବ୍ୟଥା —ଭେଷଜମନ୍ୟଦସ୍ତି ।୨୫।

ଗୀତ—ତୋ ଅଙ୍ଗସଙ୍ଗ ଦେଇ ସୁଫଳ କରିଅଛୁ
ହେ ପ୍ରିୟେ ଯେ ମୋର ବିଗ୍ରହ
ହେବେ ମେ ହ୍ରଦରେ ଯାଅ ବୋଇଲୁ ପ୍ରାଣପ୍ରିୟା
ଜାଣିଲ ଯେ ତୋର ନିଗ୍ରହ, ରେ,
ପ୍ରାଣବନ୍ଧୁ !
ପ୍ରିୟା ବିଚ୍ଛେଦ ଅଭିଘାତ,
ଯେଉଁଥିରୁ ଆନ ଅଉ— ଷଧି କିଛି ନାହିଁତ,
ତୋର କୃପାରେ ଆଶ୍ୱାସିତ ରେ ।୨୫।

ଶ୍ଳୋକଃ -ନ ସ୍ନାନଂ ନଚ ଭୋଜନଂ ନ ପଠନଂ
ନାନ୍ୟତ୍ ସୌଖ୍ୟଂ ପ୍ରିୟେ । (୧)
ନାନ୍ୟସ୍ତ୍ରୀଜନସେବନଂ ନଚ କଥା
ନିଦ୍ରାପି ନାସ୍ତେ ମମ । (୨)
କିନ୍ତୁ ତ୍ୱାଂ ପରିଚିନ୍ତୟାମି ସତତଂ
ଧ୍ୟାନେନ ଚେତଃସ୍ଥିତାଂ
ସ୍ୱପ୍ନାଲୋକନ-କାମକେଳି-ବିଧିନା
ଜୀବାମି କାନ୍ତେ । ତବ ।୨୬।

ଗୀତ—ତୋର ବିନୁ ଗୋ ଧନ ନାହିଁ ସ୍ନାନ, ଭୋଜନ,
ପଠନ ( ? ) ରମଣୀ ସେବନ,
ନ ଘେନେ ରସେ ମନ ନ ସରେ ମୋର ଦିନ
ନ ଭଜେ ନିଦ୍ରାକୁ ନୟନ ଗୋ
ପ୍ରାଣଧନ;

---

(୧)—ସୌଖ୍ୟାଧୃତିଃ (ଖ)
(୨)—କଦ୍ରାପି ନାନେ୍ୟାଦ୍ୟମଃ (ଖ)

ଅନବରତେ ତୋ ଚିନ୍ତନ
ସ୍ୱପ୍ନରେ ଅବଲୋକନ ତୋର କେଳି ବିଧାନ
ଗୁଣି ମୁଁ ରହିଛି ଜୀବନରେ ।୨୭।

ଶ୍ଳୋକଃ—ରାତ୍ରିଃ କାଳସ୍ୱରୋପମା ମଳୟଜୋ ଗନ୍ଧାନିଳଃ ଙ୍ଗ ବିଷଂ
ସୋମଃ ସୂର୍ଯ୍ୟ ଇବାଭବନ୍ମଳୟଜା— ଲେପଃ ସ୍ଫୁଲିଙ୍ଗୋପମଃ ।
ଉକ୍ତଃ ସୁସ୍ୱରବାଦ୍ୟଗୀତପରଭୃତ୍- ପାତ୍ରବକ୍ତାଶ୍ରିଧ୍ୱନଃ
ବଜ୍ରସ୍ୟାହତିରେବ କର୍ଣ୍ଣଯୁଗଳେ ବିଚ୍ଛେଦତୋ ମେ ତବ । ୨୮ ।

ଗୀତ—ତୋହର ବିନୁ ବାଳା ରଜନୀ ଯୁଗ ପରି
ଅନଳ ପ୍ରକାର ଚନ୍ଦନ
ମଳୟ ସମୀରଣ ବିଷ ପରିଚୟ ଜାଣି
କରୁଛି ଅଧିକେ ଦହନ ରେ
ପ୍ରାଣଧନ
କୋକିଳ ଗୀତବାଦ୍ୟସ୍ୱନ
ହୋଏ ବିଚ୍ଛେଦରୁ ତୋର, କର୍ଣ୍ଣ ଯୁଗଳେ ମୋର
ଅଶନି ପତନ ସମାନ ରେ ।୨୮।

ଶ୍ଳୋକଃ—ଚନ୍ଦ୍ରୋ ଦ୍ୱାଦଶଭାସ୍ୱତଃ ସମଭବ- ଦ୍ରାତ୍ରି ସ୍ୱାନଂ ଶତଂ
ମିଷ୍ଟଂ ତକ୍ରରସଂ ବିଲେପନମହୋ ଦାବାନଲୋ ମେ ତବ ।

ବଚ୍ଛେଦାନଲସ୍ତାନଲଃ ପ୍ରିୟତମେ ।
କିଂ କାଲକୂଟଃ ଶ୍ରୁତୌ ।
ଗୀତାବନ୍ଧନରେବ ବଜ୍ରସଦୃଶୋ—
ଶରଣ୍ୟଂ କଟିନଂ ଗୃହମ୍ ।୨୭।

ଗୀତ:— ତୋର ବିହୀନେ ମୋର ହୃଦୟେ ପଶିଣର
କରିବସନ୍ତ × କାତର
ଦ୍ୱାଦଶ ଚଣ୍ଡକର ସମାନ ଶଶଧର
ରଜନୀ ପ୍ରଗର ଆକାର ରେ,
ପ୍ରାଣବନ୍ଧୁ .
ଅମୃତ ରସମୟ ତୋର
ତକ୍ର ସମ ଆହାର ନ ଭଜିବ ମନର
ଅରଣ୍ୟ ସମ ଦିବ୍ୟପୁର ରେ । ।୮।
ମଲୟଜ ଲେପନ ହୁତବହ ସମାନ
ସୁଗନ୍ଧ ମଲୟଜ ବନ,
ତୋ ବିନୁ ମୋର ଏହୁ କାଲକୂଟ ସମାନ
ନଷ୍ଟପ୍ରେ ହେବ ପ୍ରାଣଧନ ରେ,
ପିକଭଣି !
ବଚନ କୁଳିଶ ସମାନ,
ସୁସ୍ୱର ଗୀତ ସ୍ୱନ ଶୁଭଇ ଆନୁଆନ
ଶୁକ ସାରିକା ଧ୍ୱନମାନ ରେ । ୨୯ ।

ଶ୍ଲୋକଃ— ମାନଂ ମାନ୍ତନ । ମୁଁଁ ଦେବ ଦପ୍ଣିତେ !
ମିଥ୍ୟାବଚଃ ଶ୍ରୂୟତେ,
କିଂ କୋପୋ ନଜସେବକେ ସଦା ବଚଃ
ସତ୍ୟଂ ତ୍ୱୟା ଗୃହ୍ୟତେ ।

ଦୋର୍ଭ୍ୟାଂ ବନ୍ଧନମାଶୁ ଦନ୍ତଦଳନଂ
ପୀନସ୍ତନାସ୍ଫାଳନଂ
ଦୋଷଶ୍ଚେନ୍ମମ ତେ କଣ୍ଠାଯବଶିଖୈଃ
ଶତଖଣ୍ଡୟ ସଦ୍ୱାରଂ କୁରୁ । ୨୭ ।

**ଗୀତ—** ମାନିନି ! ମାନ ତେଜ ନିଜ ସେବକ ଜନେ
ମିଥ୍ୟାବଚନ ଶୁଣି କର୍ଣ୍ଣେ
କୋପ କମ୍ପାଇଁ ମନେ ଦହନ୍ତୁ ଅଙ୍ଗମାନେ
ସଦୟ ନୁଅ ନିଜ ଜନେ ଗୋ,
ଯେବେ ଧିୟା
ଏହୁ ବଚନ ଶୁଣୁ ସତ,
ବାହୁ ପାଶେ ବନ୍ଧନ କରି ଦନ୍ତେ ଦଶନ
କୁଚଭୂଧରେ ତାଡ଼ ମିତ ଗୋ । ୩୦ ।
ଯେବେ ଗୋଦୋଷବୋଲି ଜାଣିଲୁ ପ୍ରାଣମଣି
ମୋତେ କର ନିର୍ଦ୍ଦୟେ ଦଣ୍ଡ
ଅଞ୍ଜନ ବକ୍ଷେବନ୍ଧ କରି କଣ୍ଠାଘଣରେ
ତନୁ ମୋ କର ଖଣ୍ଡ ଖଣ୍ଡ ଗୋ,
ଜାଣି ମୋତେ
ବସୁରି ଶାସ୍ତି ଦିଅ ରମା,
ଦୋଷ ନଥିଲେ ମୋର ସଦୟ ହୋଇ ପ୍ରିୟେ !
ସତ୍ୱରେ ହୋଇ ବସ ବାମା ରେ । ୩୧ ।

**ଶ୍ଳୋକଃ—** ନାନାକଥ କୌତୁକକେଳିଭିଃ ସା
ମାନଂ ତୁ ତେନୈବ ରମେତ ନିତ୍ୟମ୍,
ହର୍ମ୍ୟେ ସୁରମ୍ୟେ ରମତେଽତିଗୁପ୍ତେ
ମୁକ୍ତା ସଖୀଭିଃ ପରମପ୍ରିୟାଭିଃ । ୨୮ ।

ଗୀତ— ରମ୍ୟ ସପ୍ତଧପୁର ଉପବନ ଅନ୍ତର
ସଙ୍ଗତେ ଘେନ ସଖୀଜନ,
ନାନା କେଳିବିକାଶ ମଧୁର କ୍ରୀଡ଼ାହାସ
ରସରେ ନଅନ୍ତି ଯେ ଦିନ ସେ,
କାମିବର
ଯେମନ୍ତେ ନୃପ ସୁତା ସଙ୍ଗେ
ନାନା ବିବିଧ ବନ୍ଧେ ବିବିଧ ରତମାନ
ରଚ୍ଛିଲେ ଦେଖ ଜନ ରଙ୍ଗେ ଯେ ।୩୨।

ଶ୍ଳୋକଃ— କାମାତୈ ନବଯୌବନଃ କବିବରସ୍ତେ
ଭୂପାଳପୁତ୍ର୍ୟା ସମଂ
ନାନା-ବନ୍ଧ-ବିନୋଦ-ନିର୍ଭର-ରତ
କ୍ରୀଡ଼ାରସୈରନ୍ୱିତଃ
ସ୍ଥିତ୍ୱାନ୍ତଃପୁରତୋ ବହିର୍ବିଲସିତୋ
ରାଜଗୃହତୋ ଯାସ୍ୟତେ
ଚୌରେ ରାଜନିଯୋଜିତୈଃ ସୁପୁରକ୍ଷେ
ଶ୍ଚାରୈ ରୁପାସ୍ୟୃଷଧୈଃ ୨୯

ଗୀତ— କାମେ ହୋଇ ଉଚ୍ଛନ୍ନ ଭ୍ରମନ୍ତେ ଉପବନ
ପୁରଦ୍ୱାରେ ହୋଇଲେ ଆସି,
ଜାଣି ରଜା ଚରର ମାତ ହେ ରତ ସ୍ୱେତ
ଗ୍ରୀବକୁ ଧରିଣ ସନ୍ତୋଷି ସେ,
ସ୍ମରଗଣେ,
କଲେକ ନୃପ ପୁରଚର,
ଦେଖିଣ ଦଣ୍ଡଧାରି ବୋଲେ ଯେ କ୍ରୋଧ କରି
ଏହାଙ୍କୁ ବେଗେ ନେଇ ମାର ରେ ।୩୩।

ଶ୍ଳୋକଃ—ରାଜା ତାନପି ସେବକାନ୍ ବନ୍ଧୁବଧଂ
ହୁଂକାରପୂର୍ବଂ ଜଗୌ
ଚୌରଂ ଛିନ୍ଧି ଶିରସ୍ତ୍ୱୀବାଚ ବଚନଂ
ଖଡ଼୍‌ଗଂ ସମାଦୀୟତେ,
ନୀତ୍ୱା ତଂ ଭବନାଦ୍ ବହିର୍ବିଲସିତଂ
ରାଜାତ୍ମଜା ସାହସା-
ଦୃଷ୍ଟ୍ୱାଂ ସମ୍ପ୍ରତି ଦେବତାମିତି ବରେଣ୍ୟଂପ୍ୟୁଚୁଃ
ସଚୌରେଂବଦତ୍ ।୩୦।

ଗୀତ—ନୃପ ଆଦେଶ ଶିରରେ ଘେନ ରାଜ ଭଟରେ
ନଗ୍ର ବାହାର କରି ନେଇ,
ଖଡ଼୍‌ଗ କରେ ଧରି ଶିରଙ୍କୁ ରୋଷ କରି
ବୋଲନ୍ତି ଗ୍ରୀବକୁ ଅନାଇ ରେ
ରତ୍ନଚୋର,
ନୃପତି ନନ୍ଦିନୀ ସାହସ
କଲରୁ ରାଜ୍ୟ ନାଶ ଗୂଢ଼ ଜୀବନଆଶ
ସୁମର ବେଗେ ପୀତବାସ ରେ ।୩୪।
ଗୋପୀ ନେତ୍ର ଚକୋର ଆନନ୍ଦ ସୁଧାକର
ଅଘ ତମିର ଚନ୍ଦ୍ରକର
ଭକ୍ତମାନସ ହଂସ ନୀଳାଦ୍ରିଲ ପ୍ରକାଶ
ଦାରୁ ଦେହରେ ନିରାକାର ହେ,
ସାଧୁଜନେ
ତାଙ୍କ ଚରଣେ ଦେଇ ମନ
ନୃପତି ଧନଞ୍ଜୟ ସର୍ବ ବିଷୟ ତେଜି
ସେ ରୂପ ଧ୍ୟାୟି ବଞ୍ଚି ଦିନ ସେ ।୩୫।

# ଅଷ୍ଟମ ଛାନ୍ଦ

ରାଗ - ବୈଖୀ

**ଶ୍ଳୋକଃ**—ଅଦ୍ୟାପି ତାଂ କନକଚମ୍ପକଦାମଗୌରୀଂ
**(ନାୟକ)** ଫୁଲ୍ଲାରବିନ୍ଦବଦନାଂ ତନୁରୋମରାଜିମ୍,
ସୁପ୍ତୋତ୍ଥିତାଂ ମଦନବିହ୍ୱଳଲାଳସାଙ୍ଗୀଂ
ବିଦ୍ୟାଂ ପ୍ରମାଦ-ଗୁଣିତାମିବ ଚିନ୍ତୟାମି ।୧।

**ଗୀତ**—ଶୁଣ ହେ ରସିକଜନ          ଏଥୁ ଅନନ୍ତରେ ପୁଣ
କରରେ ଖଡ଼ଗ ଧରି ନୃପ କିଙ୍କର,
କହନ୍ତି ଚୋରକୁ ବାଣୀ          ଶୁଣନ୍ତି ହୋ ମନ୍ଦ ପ୍ରାଣୀ
ଯେମନ୍ତ ସାହସ କର୍ମ କଲୁ ନିର୍ଭର,
ଯେବେ ଛାଡ଼ ପ୍ରାଣତ ଆଶ
ସୁମର ଇଷ୍ଟ ଦେବତା ହୋଇଛୁ ନାଶ, ।୧।
କହେ ଚୋର ଶୁଣ ଭାଇ          ଯେବେ ହେ ତାକୁ ଚିନ୍ତଇ
କନକ ଚମ୍ପକ ଦାମ ଗଉରଦେହୀ
ଫୁଲ୍ଲାରବିନ୍ଦ-ବଦନୀ          ସୁରୋମ-ରାଜି ରଞ୍ଜନୀ
ପୃଥୁ ଭୁଙ୍ଗତରସ୍ତନୀ ମୋ ପ୍ରାଣସହୀ
ସେହି ମୋର ଇଷ୍ଟଦେବତା
ଇନ୍ଦ୍ରାବତୀ ରମାବର ନୃପ ଦୁହିତା ।୨।

ଶୟନୁ ଉଠିଣ ଥାଇ ଅଳସିତ ଅଙ୍ଗ ହୋଇ
ଘୂର୍ଣ୍ଣିତ ନେତ୍ରରେ ଚାହିଁ ମୋତେ କହୁଥାଇ
ପୁଣ ନ ଦେଖୁ ଲଜ୍ଜନ ପୀନସ୍ତନରୁ ବସନ
ନଦ୍ରା ଅଳସରେ ମିଶି ଶୋଭା ରଞ୍ଜଇ,
ଯେବେ ସେ 'ଇଚ୍ଛା'କୁ ଚିନ୍ତଇ
ପ୍ରସନ୍ନ ଗୁଣିତବାଦ୍ୟ ସେ ମୋ ଅଛଇ, ।୩।
ଶ୍ଳୋକଃ—ଅଦ୍ୟାପି ତାଂ ଶଶିମୁଖୀଂ ନବଯୌବନାଢ୍ୟାଂ
ପୀନସ୍ତନୀଂ ପୁନରହଂ ଯଦି ଗୌରକାନ୍ତିମ୍,
ପଶ୍ୟାମି ମନ୍ମଥଶରାନଳପୀଡ଼ିତାଙ୍ଗୀଂ
ଗାତ୍ରାଣି ସମ୍ପ୍ରତି କରୋମି ସୁଶୀତଳାନି । ୨
ଗୀତ—ଯେମନ୍ତ ଦୃଷ୍ଟର ବାଣୀ ଶୁଣିଣ ଦୋସାଧୁ ଭଣି
ଅବଶ୍ୟ ହୋଇବ ତୋର ପ୍ରାଣ ବିନାଶ,
ଚିନ୍ତ ତୁ ଦେବମୁରାରି ସଂସାରୁ ହୋଇବୁ ପାରି
ଯେବେ କି ନ ତେଜୁ କିଛେ ସେ ପ୍ରୀତି ଆଶ,
ଅଗ୍ନି ଲାଗି ଯେସନ୍ତେ ପତଙ୍ଗ
ଇଚ୍ଛାବତୀ ଲାଗି ତେସନ୍ତେ ତେଜୁଛୁ ଅଙ୍ଗ । ୪
ଦୃଷ୍ଟ ବୋଲଇ ଦୋସାଧୁ ଜାଣିଲି ବୁଦ୍ଧି ଅସାଧ
ମତେ କି କହିଲୁ 'ଜଗନ୍ନାଥ' ସୁନ୍ଦର
ସମ୍ପୂର୍ଣ୍ଣ ଚନ୍ଦ୍ରମାନନୀ ପୃଥୁଳ ବର୍ତ୍ତୁଳସ୍ତନୀ
ନବୀନ ଯୌବନୀ ଇଚ୍ଛା ମୋ ସମାଦର,
ସେ ମୋହର ଗଳାର ହାର
ଅବଳା ଚନ୍ଦ୍ର ଚନ୍ଦ୍ରମା ମୁହିଁ ଚକୋର । ୫ ।
ପଙ୍କଜ ଦୃଷ୍ଟ ଲୋଚନା ମତ୍ତମାତଙ୍ଗଗମନା
ମଞ୍ଜୁଳପିକବଚନା ତରୁଣୀ ମଣି

ରସାଳ ହେମ ବରନା! କୁନ୍ଦ କଳିକା ରଦନା
ନୃପତି କୋଳ ନନ୍ଦନା ଯେ ମୋ ରମଣୀ
କେବେହେଁ ମୁଁ ଦେବେ ଦେଖିବି
ଅନଙ୍ଗ ତାପିତେ ଅଙ୍ଗ ଶାନ୍ତ କରିବି । ୨ ।

ଶ୍ଳୋକଃ—ଅଦ୍ୟାପି ତାଂ ଯଦି ପୁନଃ କମଳାୟତାକ୍ଷୀଂ,
ପଶ୍ୟାମି ପୀବରପୟୋଧରଭାରଖିନ୍ନାମ୍,
ସଂପୀଡ୍ୟ ବାହୁଯୁଗଳେନ ପିବାମି ବକ୍ତ୍ର—
ମୁନ୍ମତ୍ତବନ୍ମଧୁକରଃ କମଳଂ ଯଥେଷ୍ଟମ୍ । ୩ ।

ଗୀତ—ଏତେହେଁବେଳେ ହେ ସର·ସାରସ-ନେତ୍ରୀକି ମୋର
ଦେଖିବି ମୋ କୋଟି ଜନ୍ମର ପୁଣ୍ୟ ଥିଲେ
ବେନି ଭୁଜେ ବେଗେ ଭିଡ଼ି ଦୃଢ଼େ ଆଲିଙ୍ଗନ କରି
ଅଧର ଅମିୟ ପାନ କରିବି ହେଲେ,
ଯେସନେ ସେ ମତ୍ତଭ୍ରମର
କରେ ପଦ୍ମ-ମଧୁପାନ ହୋଇ ନିର୍ଭର । ୨ ।

ଶ୍ଳୋକଃ—ଅଦ୍ୟାପି ତାଂ ନିଧୁବନ-କ୍ଲମନିଃସହାଙ୍ଗୀ—
ମାପାଣ୍ଡୁ ଗଣ୍ଡପତିତାଳକକୁନ୍ତଳାଳିମ୍,
ପ୍ରଚ୍ଛନ୍ନପାପକୃତମନ୍ଥରମାବହନ୍ତୀଂ
କଣ୍ଠାବସକ୍ତ-ମୃଦୁବାହୁଲତାଂ ସ୍ମରାମି । ୪ ।

ଗୀତ ଯେବେ ହେ ତାଙ୍କୁ ଚିନ୍ତଇ ରତିଶ୍ରମ ବିନାଶଇ
ଏମନ୍ତ କୋମଳ ଅଙ୍ଗ ମୋର ବାଳାର
ପାଣ୍ଡୁର ଗଣ୍ଡମଣ୍ଡଳ— ସହିତ ଚୂର୍ଣ୍ଣ କୁନ୍ତଳ
ମୃଦୁ ମୃଦୁ ହସିବାର ଅତି ରୁଚିର,
ସୁରତ ବିଷୟ ରସରେ
ମଞ୍ଜୁ ଭୁଜ କଣ୍ଠ ଛନ୍ଦି ମୋ ମନ ହରେ । ୮ ।

ଶ୍ଳୋକଃ—ଅଦ୍ୟାପି ତାଂ ସୁରତଜାଗରଘୂର୍ଣ୍ଣମାନ—
ତିର୍ଯ୍ୟଗ୍ ବଳତ୍ତରଳତାରକମାୟତାକ୍ଷୀମ୍,
ଶୃଙ୍ଗାରସାର (୧) କମଳାକରରାଜହଂସୀଂ
ବ୍ରୀଡ଼ାବନମ୍ରବଦନାମୁଷସି (୨) ସ୍ମରାମି । ୫।

ଗୀତ—ଖଡ଼ଗ ଧରି ଦୋସାଠୁ ବୋଲଇ ଚୋରକୁ ବାଣୀ
ପୁଣି ତୁ ମୃତ୍ୟୁ ସମୟରୁ ନୃପନନ୍ଦିନୀ
ଦେଲୁ ତୁ ଅନଳେ ଝାସ ତେଣୁ ଲଭୁ ଅଛୁ ନାଶ
ବାତୁଳ ପ୍ରାୟେକେ କହୁ ଯେ ବାଣୀ
ଯେବେ ଚିନ୍ତ ଶାରଙ୍ଗଧାରୀ
ସ୍ତ୍ରୀ ନାମ ଧଇଲେ କ ହୋଇବୁ ପାରି । ୯ ।

ଶୁଣରେ ଦୋସାଠୁ ତୁହି ଏବେହେ ତାକୁ ଚିନ୍ତଇ
ସୁରତେ ଉନ୍ନିଦ୍ର ବେଶେ ଘୂର୍ଣ୍ଣିତ ନେତ୍ର
ବକ୍ରେ ଘୂର୍ଣ୍ଣିବା ତରଙ୍ଗ ତରଳ ତାରକା ସଙ୍ଗ
ଚେତଣ କରି ପବିତ୍ର ମୋ କରଇ ଗାତ୍ର
କାମରସ-ମାନସହଂସୀ
ସେ ମୋର ଇଷ୍ଟଦେବତା ଅମିୟହାସୀ । ୧୦ ।

ଶ୍ଳୋକଃ—ଅଦ୍ୟାପି ତାଂ ଯଦି ପୁନଃ ଶ୍ରବଣାୟତାକ୍ଷୀଂ
* ପଶ୍ୟାମି ଦୀର୍ଘବିରହଜ୍ୱରିତାଙ୍ଗଯଷ୍ଟିମ୍, (୩)
ଅଙ୍ଗୈରହଂ ସମୁପଗୁହ୍ୟ (୪) ତତୋଽତିଗାଢ଼ଂ
ନୋନ୍ମୀଲୟାମି ନୟନେ ନହି ତାଂ ତ୍ୟଜାମି । ୬ ।

---

(୧) ଶୃଙ୍ଗାର ବାର (ଖ) (୨) ମନସି
(୩) ଜ୍ୱରିତାଙ୍ଗଯଷ୍ଟିମ୍ (ଖ) (୪) ସମୁପଗୁହ୍ୟ (ଖ)

ଗୀତ—ଲଜ୍ଜାଭରେ ସୁରୁମୁଖ ନମ୍ର କରି କରି ଗ୍ରୀବା
ଉଷାଙ୍କାଳେ ବସିଥାଇ ମୋର ଅଙ୍କରେ
ବିଶାଳ ପଙ୍କଜନେତ୍ରୀ ଯେ ମୋହର ପ୍ରେମପାତ୍ରୀ
ଯେ ସମୟେ ଦେଖିବି କି ତାହାଙ୍କୁ ନେତ୍ରେ
ବିରହରେ ଶିଥିଳ ଅଙ୍ଗ,
ତନୁ ମୋ ତନୁ କରୁଛି ଦୁଷ୍ଟ ଅନଙ୍ଗ ।
ଯେବେ ହେ ଯେବେ ଦେଖିବି ନିବିଡ଼ ଆଶ୍ଳେଷ କରି
ନୟନ ବୁଜିଣ ଆଉ ଫେଡ଼ିବି ନାହିଁ
ସେ ସୁଖ ପରମାନନ୍ଦ ଲଭିଣ ହେବ ଅନନ୍ଦ
ପ୍ରାଣ ଥିବାଯାଏ ତାଙ୍କୁ ମୁର୍ଚ୍ଛିବି ନାହିଁ,
ହରିହର ବ୍ରହ୍ମା ମୋ ସେହି,
ଇଚ୍ଛା ବନୁ କାମମୁକ୍ତ ଦେବ ହୋ କହି । ୧୨ ।

ଶ୍ଳୋକଃ -ଅଦ୍ୟାପି ତାଂ ସୁରତତାଣ୍ଡବସୂତ୍ରଧାରୀଂ
ପୂର୍ଣ୍ଣେନ୍ଦୁସୁନ୍ଦରମୁଖୀଂ ମଦବିହ୍ୱଳାଙ୍ଗୀମ୍ ।
ତନ୍ୱୀଂ ବିଶାଳଜଘନ (୧) ସ୍ତନଭାରଖିନ୍ନାଂ (୨)
ବ୍ୟାଲୋଲକୁନ୍ତଳକଳାପବତୀଂ ସ୍ମରାମି ।୭।

ଗୀତ—ସୁରତ ନାଟକ ସୂତ୍ର- ଧାରୀ ପୂର୍ଣ୍ଣଚନ୍ଦ୍ର ମୁଖୀ
ମଦନ ବିହ୍ୱଳ ଅଙ୍ଗ ଅଳସକାରୀ
ସୁବିଶାଳ ଜଘନ ପୃଥୁଳ ଉରଜ ଘନ
ଭରେ ଖିନ୍ନ ହୋଇଥାଇ ନବକିଶୋରୀ
ନୃପସୁତା ଯେ ମୋ ଜୀବନ,
ବିଲୋଳ କୁନ୍ତଳାବତୀ ତା,ରେ ମୋ ଧ୍ୟାନ । ୧୩ ।

---

(୧) ବିଶାଳ ନୟନାମ୍ (ଖ) (୨) ନମ୍ରାଂ (ଗ)

ଶ୍ଳୋକଃ—ଅଦ୍ୟାପି ତାଂ ମସୃଣଚନ୍ଦନପଙ୍କମିଶ୍ର—
କସ୍ତୂରିକାପରିମଳୋତ୍ଥିତଗନ୍ଧଦେହାମ୍ (୧)
ଅନ୍ୟୋନ୍ୟଚଞ୍ଚୁପୁଟଚୁମ୍ବନଲଗ୍ନଖଞ୍ଜ—
ଯୁଗ୍ମାଭିରାମନୟନାଂ ଶୟନେ ସ୍ମରାମି ।୮।

ଗୀତ—ମସୃଣ ଚନ୍ଦନପଙ୍କ    କସ୍ତୂରିକାରେ ସଂଯୋଗ
ହେବା ପରିମଳ ପରି ସୁଗନ୍ଧଗାତ୍ର
ଯେଉଁ ରମାବର ପୁଣ ଅନ୍ୟେ ଅନ୍ୟରେ ଚୁମ୍ବନ
ଖଞ୍ଜଯୁଗ୍ମ ପରି ଲଗ୍ନ ସୁନ୍ଦରନେତ୍ର,
ସେତେ ଅଭିରାମ ତାହାର,
ଯେତେବେଳେ ସେ ଶୀତ ମନୁ ନୋହେ ପାସୋର । ୧୪ ।

ଶ୍ଳୋକଃ—ଅଦ୍ୟାପି ତତ୍ କନକ-ଗୌର-କୃତାଙ୍ଗରାଗଂ
ପ୍ରସ୍ୱେଦବିନ୍ଦୁବିତତଂ ବଦନଂ ପ୍ରିୟାୟାଃ,
ଅନ୍ତେ ସ୍ମରାମି ରତଖେଦ—ବିଲୋଲନେତ୍ରଂ
ରାହୂପରାଗପରିମୁକ୍ତମିବେନ୍ଦୁବିମ୍ବମ୍ । ୯ ।

ଗୀତ—ଯେତେବେଳେ ଚିନ୍ତଇ ସ୍ମରୁ କନକପ୍ରତିମା ଗୋରୀ
କୁଙ୍କୁମ ପଙ୍କରେ ତନୁ ସୁନ୍ଦର କରି
ରତ ଅନ୍ତେ ସ୍ମରୁମୁଖ    ଦିଅଇ ପରମ ସୁଖ
ରୁଚିର ଦିଶଇ ସ୍ୱେଦବିନ୍ଦୁ ବିକାଶୀ,
ଶର୍ମ ଭରେ ନେତ୍ର ତରଳ
ଗ୍ରାସି କି ଛାଡ଼ିଛି ରାହୁ ଶଶିମଣ୍ଡଳ । ୧୫ ।

---

(.) ତୁଅବସର୍ପିଣିକାମ୍ (ଗ)

ଏସନ ଗୂଢ଼ ବଚନ— ଶୁଣି ବୋଲଇ ଦୋସାଧ
ଆରେ ପରଦେଶୀ ଚୋର ବାତୁଳମତ
ପୁଣ ପୁଣ ନୃପସୁତା ନାମ ତୁରେ ନଳେ ଧରି
ମରଣରେ ତୋର ଜରେ ନୁହଇ ଭୀତ
ଚିନ୍ତ ହରି କାଟିବି ମୁଣ୍ଡ ।
ଏ ତେବେ ନ ମଲୁ ଚୋର ନିର୍ଲଜ୍ଜ ଭଣ୍ଡ । ୧୬ ।

ଶ୍ଳୋକଃ—ଅଦ୍ୟାପି ତାଂ ନିଧୁବନେ ମଧୁଗନ୍ଧପୁଷ୍ଟାଂ (୧)
ଲଜ୍ଜା (୨) ଧରାଂ କୁଣତନୁଂ ପ୍ରଚଳାୟୁତାକ୍ଷୀମ୍ (୩)
କାଶ୍ମୀରପଙ୍କମୃଗନାଭିକୃତାଙ୍ଗରାଗାଂ
କର୍ପୂରପୂଗପରିପୂର୍ଣ୍ଣମୁଖୀଂ ସ୍ମରାମି । ୧୦ ।

ଗୀତ—ନିଧୁବନ କେଳିକାଳେ ଅଧରମଧୁ ରସରେ
ପୁଣ ପୁଣ ରସନାକୁ ଧ୍ୟାନ କରଇ ।
କୁଙ୍କୁମକସ୍ତୁରୀପଙ୍କେ ଯାରୁ ତନୁ ଆମୋଦଇ
ପଙ୍କଜତରଳନେନେ ମନେ ସ୍ମରଇ ।
କର୍ପୂର ପୂଗରେ ବାସିତ
ସେ ମୁଖକୁ ଚିନ୍ତା ମୁଁ କରଇ ସନ୍ତତ । ୧୭ ।

ଶ୍ଳୋକଃ—ଅଦ୍ୟାପି ତତ୍ କନକକୁଣ୍ଡଳଜୃଷ୍ଟମାସ୍ୟଂ (୪)
ତସ୍ୟାଃ (୫) ସ୍ମରାମି ବିପରୀତରତାଭିଯୋଗେ,

(୧) ମଧୁ ଦଗ୍ଧଦେହାଂ (ଖ) ମଧୁପାନରକ୍ତାଂ (ଗ)
(୨) ଲୀଳା—ଧରାଂ (ଗ)
(୩) ଚପଲସୃତାକ୍ଷୀମ୍ (ଖ) ଓ (ଗ)
(୪) ଘୃଷ୍ଟଗଣ୍ଡ (ଗ)
(୫) ମାସ୍ୟ (ଗ)

ଆନ୍ଦୋଳନଶ୍ରମଜଲଷ୍ଟୁଟପାନ୍ଥବିନ୍ଦୁ—
ମୁକ୍ତାଫଳପ୍ରକରବଞ୍ଚୁରିତଂ ପ୍ରିୟାୟାଃ । ୧ ।

ଗୀତ—ଏବେହେଁ ଚିନ୍ତଇ ମୁହିଁ ବିପରୀତ ରତି କଲେ
ବଦନମଣ୍ଡଳଶୋଭା ପ୍ରିୟାର ମୋର
ତାଙ୍କ ବେନି ଉଜ୍ଜ୍ୱଳ ରତିରସରେ ଚଞ୍ଚଳ
ସମ୍ପୂର୍ଣ୍ଣ ଚନ୍ଦ୍ର ପାଶେ କି ଗୁରୁ ଯୁଗଳ
ମର୍ମେ ସ୍ୱେଦ ବିନ୍ଦୁ ଖସଇ
ବିକଚପଦ୍ମ କି ଯେସନ୍ତେ ମୋତି ବର୍ଷଇ । ୮ ।

ଶ୍ଳୋକଃ—ଅଦ୍ୟାପି ତନ୍ମନସି ସମ୍ପରିବର୍ତ୍ତତେ ମେ
ରାତ୍ରୌ ମୟି କ୍ଷୁତବତି କ୍ଷିତିପାଳପୁତ୍ର୍ୟା
ଜୀବେତି ମଙ୍ଗଳବଚଃ ପରିହୃତ୍ୟ କୋପାତ୍
କର୍ଣ୍ଣେ କୃତଂ କନକପତ୍ରମନାଲପନ୍ତ୍ୟା । ୨ ।

ଗୀତ—ଯେବେ ହେ ପ୍ରାଣପ୍ରିୟାର ସେ କଥା ମାନ ମୋହର
ଖଣେ ହେଁ ପାସୋରୁ ନାହିଁ ନିଶି କ୍ରୀଡ଼ାର
ମାନ କରି ଥିଲେ ମୋତେ ନକହି ବାଣୀ ଛୁରିତେ
ଦୂର କରିଥିଲା ଅଳଙ୍କାର ତାହାର,
ତାକନ୍ତେ ମୁଁ ନ କହି ବାଣୀ
ତାଙ୍କ ଘେନିଲା କରେ ଚଳୁଥିମଣି । ୧୯ ।

ଶ୍ଳୋକଃ—ଅଦ୍ୟାପି ତତ୍ ପ୍ରଣୟଭଙ୍ଗୁରଦୃଷ୍ଟିପାତଂ
ତସ୍ୟାଃ ସ୍ମରାମି ରତବିଭ୍ରମଗାତ୍ରଭଙ୍ଗମ୍,
ବସ୍ତ୍ରାଞ୍ଚଳ ସ୍ଖଳନଚୁରୁପୟୋଧରାନ୍ତଂ
ଦନ୍ତଚ୍ଛଦ' ଦଶନଖଣ୍ଡନମଣ୍ଡନଂ ଚ (୨) । ୧୩ ।

---

(୧) ମନନ୍ତରଂ ଚ (ଗ)

ଗୀତ—ଯେବେ ହେ ଚିନ୍ତଇ ତାହା    ସ୍ନେହରଙ୍ଗିମା ନୟନେ
ବନ୍ଦ କରି ମୋରେ ସୁମାମଣି ସୁହାଣି
ରକ୍ତ ଶର୍ମରେ ଲଳିତ    ପତ୍ରାବଳି ବାଧକାନ୍ତ
କୋମଳଶରୀରେ ତା,ର ଶିରୀଷ ଜାଣି
ସବନରେ ଖଞ୍ଜି ବସନ,
କୁଚ ଶୋଭନଦଶନ ହି ମଣ୍ଡନ ।

ଶ୍ଲୋକଃ — ଅଦ୍ୟାପ୍ୟଶୋକକରପଲ୍ଲବରକ୍ତହସ୍ତଂ
ମୁକ୍ତାଫଳପ୍ରକରରଚ୍ଛିତଚୂଚୁକାଗ୍ରମ୍,
ଅନ୍ତଃସ୍ମିତୋଲ୍ଲସିତ (୧) ପାଣ୍ଡୁରଗଣ୍ଡଭିତ୍ତିଂ
ତାଂ ବଲ୍ଲଭାମଲସହଂସଗତାଂ ସ୍ମରାମି । ୧୪ ।

ଗୀତ—ଯେବେ ହେ ଆରେ    ଦୋଷାଧୁ ଚିନ୍ତାକରୁଅଛି ତା'ର
ମଞ୍ଜୁଳ ବଞ୍ଜୁଳ ଶୋଭ କରପଲ୍ଲବ ।
ମା,ର ଅଙ୍ଗ ଲଭି ରକ୍ତ—    ମୁଦ୍ରା କାଞ୍ଚଣ ଶୋଭନ ।
କର ଶରରେ କାମ କି ଜିଣିଲା ଶିବ
ଯେଣୁ କରି ମର୍ତ୍ତ୍ୟରେ ଜାତ
ତା ମୁଖ ବାନ୍ଧୁଛି କାମଦେବ ସଂଘାତ । ୨୧ ।
ଯେବେ ଏହା ଜାଣି ହେତ    ଭୟେଣ ବେନଶରୀର
କରିଣ ରହିଲା ଯାଇ ରମଣୀ ଉରେ ।
ମୁକ୍ତାମାଳବ୍ୟାଜରେ    ସୁରସରିତ ଶରୀରେ
ଧରିଣ ରହିଛି ସେହୁ କାମ ଭୟରେ ।
ସ୍ମିତହାସେ ସେ ଚନ୍ଦ୍ରକଳା
କନ୍ଦୁଅଛି ମନ୍ଦଗତ ମରାଳଲୀଳା । ୨୨ ।

---

(୧) ସ୍ମିତୋଚ୍ଛ୍ୱସିତ (ଗ)

ଶ୍ଳୋକଃ—ଅଦ୍ୟାପି ତତ୍ କୁସୁମରେଣୁପଟୋରୁଦେଶ-(୧)
ନ୍ୟସ୍ତଂ ସ୍ମରାମି ନଖରକ୍ଷତଲକ୍ଷ୍ମ ତସ୍ୟାଃ ।
ଆକୃଷ୍ଟହେମରୁଚିରାମ୍ବରମୁତ୍‌ଥିତାୟାଃ
ଲଜ୍ଜାନତଂ (୨) କରଧୃତଂ ନ ହୃତୋ(୩)ବ୍ରଜନ୍ତ୍ୟାଃ ।୧୫।

ଗୀତ—ପୁଣିରେ ସ୍ନେହେ ଦୋସାଧୁ ପ୍ରିୟାର ମୋ ଗୁରୁଉରୁ
କୁସୁମରେଣୁରେ ସ୍ଥିରୁ ଚିତ୍ରଇ ମୁହିଁ
ନଖ ପଦରେ ମଣ୍ଡିଲ କୁସୁମସ୍ୱଗେ ଗାଠିଲ
କରଇ ଚିତ୍ତ ତରଳ ଅନଙ୍ଗ ଦହି
ସେ ମୋ କାମସାଗର-ଭେଳା
ସେ ମୋର ଇଷ୍ଟଦେବତା ରସକୁଶଳା । ୨୩ ।

ଏନେ ହେ ସୁରତରଙ୍ଗେ ତା'ର ମୋର ସ୍ନେହ ସଙ୍ଗେ
ପ୍ରଭାତେ ବଚନ ମୁହିଁ ବୋଇଲି ତା'ରେ
ଶୁଣିଣ ରମଣୀମଣି ମତ୍ତ-କରୀନ୍ଦ୍ର-ଗମନୀ
ଉଠନ୍ତେ ମୁଁ ଟେକାଥିଲ ଧଇଲି ତା'ରେ
ଲଜ୍ଜାଭରେ ନ ଟେକି ବାସ
ନ ଚଳ ରହିଲା ବାମାବର ମୋ ପାଶ । ୨୪ ।

ବୋଲେ ଦୋସାଧୁ ବଚନ ତୋହ୍ମ ନାହିଁ ମୃଦୁଜନ
ଯେତେ ହେଁ କହିଲେ ତୁ ରେ ବୁଝିଲୁ ନାହିଁ ।

---

(୧) କନକରେଣୁ ଘନୋରୁଦେଶେ (ଗ)
(୨) ଲଜ୍ଜାବଶାତ୍ (ଗ)
(୩) ତତୋ (ଗ)

ସୁମର ପରମାନନ୍ଦ  କାଟିବ ତୋହର ଙ୍କନ୍ଧ
ସ୍ତ୍ରିଗୀ ଗୁରୁ ନାମ ଭୁରେ ଧରୁ କମାଇଁ
ଦଣ୍ଡିବେ ନୃପଷ୍ଟକେଶରୀ
ପୁଣି ପୁଣି ଜପୁ ତୁ ରେ ତା'ର କୁମାରୀ । ୨୫ ।

ଶ୍ଳୋକଃ—ଅଦ୍ୟାପି ତାଂ ଶଧୃତକଜ୍ଜଲଲୋଲନେତ୍ରାଂ
ପୃଥ୍ୱୀଂ ପ୍ରଭୁତକୁସୁମାକୁଳକେଶପାଶାମ୍ ।
ସିନ୍ଦୂର—ସଙ୍କୁଳିତ ମୌକ୍ତିକହାରଦନ୍ତ-(୧)
ମାବଦ୍ଧହେମକଣ୍ଠିକାଂ ରହସି ସ୍ମରାମି । ୧୬ ।

ଗୀତ—ପୁଣି ହିଁ ଶୁଣରେ ଭାଇ  ତା ନେତ୍ର ଶୋଭା ନ କହି
ମସୃଣ କଜ୍ଜଳ-ପଙ୍କେ ଦିଶେ ଶୋଭନ
ବାଧାତା ଯେତେ କୁସୁମ  ଅବଶରେ କଲ ଜନ୍ମ
ତା'ର କବରୀମଣ୍ଡନେ କରି ଯତନ
ସେ ମୋହର ପରମାନନ୍ଦ
ଚିନ୍ତାଲ ଛେଦସି, ଭାଇ ! ଯେ ମୋର ଙ୍କନ୍ଧ । ୨୬ ।

ସେ ଶୋଭା କହି ନୁହଇ  ପ୍ରିୟାର ମୋ ଦନ୍ତପନ୍ତି
ମାଣିକ୍ୟ ସମ୍ପୃକ୍ତ ମୋତି ଥିଲେ ଯେସନ ?
କଣ୍ଠୀର କ୍ଷୁଦ୍ର କଙ୍କିଣୀ  ରତିରଙ୍ଗେ କରେ ଧ୍ୱନି
ସନ୍ତତେ ମୋ ମନ ତାହା କରଇ ଧ୍ୟାନ
ତାକୁ ମୁହିଁ ସେବୁଛି ଯହୁଁ
ତୋହର ହସ୍ତରେ ମୃତ୍ୟୁ ହୋଇବ କାହୁଁ । ୨୭ ।

---

(୧) ଦନ୍ତକାନ୍ତ (ଗ)

ଶ୍ଳୋକଃ—ଅଦ୍ୟାପି ତାଂ ଗଳିତବନ୍ଧନକେଶପାଶାଂ
ସ୍ରସ୍ତସ୍ରଜଂ ସ୍ମିତସୁଧାମଧୁରାଧରୋଷ୍ଠୀମ୍
ପୀନୋନ୍ନତସ୍ତନଯୁଗୋପରି ଚାରୁଚୁମ୍ବ-
ନ୍ମୁକ୍ତାବଳୀଂ ରହସି ଲୋଲଦୃଶାଂ ସ୍ମରାମି । ୨୭ ।

ଗୀତ—ସ୍ମରେବେ ହେ ତାହାର ମୁହିଁ ଚିନ୍ତୁଅଛି ଅନୁବ୍ରତେ
ଅନଙ୍ଗ କେଳିରେ ତା ଗଳିତ କୁନ୍ତଳେ ।
ବିପୁଳ କୁସୁମଦାମ ଖସିଣ ଦିଶେ ସୁସମ
ଯେହ୍ନେ ନବ ଘନେ ବିଦ୍ୟୁଲ୍ଲତା ମଞ୍ଜୁଳେ ।
ସ୍ମିତ ସୁଧାରସେ ମଧୁର
ପ୍ରିୟାର ମୋ ଶୋଭା ଦିଶେ ଅଧ ଅଧର । ୨୮ ।

ବର୍ତ୍ତୁଳଉନ୍ନତସ୍ତନୀ ତିନି ଜଗତ ମୋହିନୀ
ମଧୁର କୋକିଳବାଣୀ ଏଣୀନୟନୀ
ଚଞ୍ଚଳ ଚାରୁକଟାକ୍ଷା ସେହୁ ରତିରସେ ଦକ୍ଷା
ସେ ମୋହର ଅନୁବ୍ରତେ କାମଦାୟିନୀ
ଉରେ ମୋତିହାର ଶୋଭିତ
ହେମଗିରି ଶିରେ ଯେହ୍ନେ ସୁରସରିତ । ୨୯ ।

କାଳନ୍ଦୀ ତଟ ବିଟପୀ— ତଳରେ ବିଜେ ମୁରାରି
ରାଧା ଆଲିଙ୍ଗନେ ଦିଶେ ଅତିରୁଚିର
ଗୋପି (?) ବାଦମ୍ବ କଦମ୍ବ ଘେନିଣ ନତ୍ୟେ ଆନନ୍ଦ
ବୃନ୍ଦାବନେ କରେ ନାନା ରଙ୍ଗେ ବିହାର ।
ସେ ରୂପକୁ ଚିନ୍ତ ସନ୍ତତ
ନୃପଧନଞ୍ଜୟ ଭଞ୍ଜ ରଚିଲେ ଏ ଗୀତ । ୩୦ ।

# ନବମ ଛାନ୍ଦ

ରାଗ—ଚିନ୍ତାଦେଶାକ୍ଷ

ଶ୍ଳୋକଃ—ଅଦ୍ୟାପି ତାଂ ଧବଳବେଶ୍ମନି ରତ୍ନଦୀପ
ମାଳାମୟୂଖପଟଳୈର୍ଦ୍ଦଳିତାନ୍ଧକାରେ ।
ପ୍ରାପ୍ତୋଦ୍ୟମେ ରହସି ସମ୍ମୁଖଦର୍ଶନାର୍ଥଂ ।
ଲଜ୍ଜାଭୟାର୍ତ୍ତନୟନାମନୁଚିନ୍ତୟାମି ।୧।

ଗୀତ—ଏଥୁ ଅନନ୍ତରେ ହସି ବୋଲେ ଦୋସାଥୁ
ଜାଣିଲି ରେ ସ୍ପଷ୍ଟ ତୁହି ଅତ ଅସାଧୁ ।୧।
ଜଳନ୍ତା ଅନଳେ କେକେ ଦେହରେ ଝାସ
ଶେଷେ ନାଶ ଯାଉ ଭଜ ଜଗନ୍ନିବାସ ।୨।
କପାଇଁ ବୋଇଲୁ ଭଜ ଜଗନ୍ନିବାସ
ମୋ ଜଗନ୍ନିବାସ ଇଚ୍ଛା ମୁଁ ତାର ଦାସ ।୩।
ସଉଧ ବନେ ରତନ ଦୀପ କିରଣ ।
ତମିର ଖଣ୍ଡନେ ସେ ଯେ ଅନ୍ତରଞ୍ଜନ ।୪।
ତହିଁରେ ଚିନ୍ତୁଛି ତାର ସେ ଭାବ ଲୀଳା
ରତି କ୍ରୀଡ଼ାରେ ଯେ ? ଯାହା କଲା ସୁଶୀଳା ।୫।
ଅଙ୍ଗ ବିଲୋକନେ ପ୍ରମା ଲଜ୍ଜିତ ହୋଇ
ମୋର ଅଙ୍ଗ ଲୀନ ହେଲା ପଙ୍କଜମୁହିଁ ।୬।

ଶ୍ଳୋକଃ—ଅଦ୍ୟାପି ତଦ୍ବିରହ ବହ୍ନିନିପୀଡ଼ିତାଙ୍ଗୀଂ
ତନ୍ୱୀଂ କୁରଙ୍ଗନୟନାଂ ସୁରତୈକପାତ୍ରୀମ୍ ।

ନାନା ବଚିତ୍ରକୃତମଣ୍ଡନମଣ୍ଡିତାଙ୍ଗୀଂ (୧)
ତାଂ ରାଜହଂସଗମନାଂ ରହସି (୨) ସ୍ମରାମି । ୨ ।

ଗୀତ—ପୁଣି ଚିନ୍ତୁଅଛି ଯେବେ ପ୍ରାଣବଲ୍ଲଭୀ
ବିରହ ଅନଳେ ତାପ ଥିବ ସେ ଲଭି । ୭ ।
କୁରଙ୍ଗ ଶୃଙ୍ଗ ନୟନ କରି ବିରଂଗ
ପୁଣ ପୁଣ ଚିନ୍ତୁଥିବ ମୋ ଅଙ୍ଗ ସଂଗ ।
ଏକା ସେ ମୋ ସୁରତର ରସନିଧାନ
କୃତ କରି ଥାଇ ସେ ବିଚିତ୍ରମଣ୍ଡନ । ୯ ।
ମତ୍ତହଂସ ନିନ୍ଦଇ ଗମନଶ୍ରୁତି
ମୋର ଜୀବର ଜୀବନ ନୃପକୁମାରୀ । ୧୦ ।
କୁସୁମଶରର ସେହୁ କେଳିମନ୍ଦିର
କିବା ସେ ଅନଂଗ ଜୟକେତୁ ରୁଚିର । ୧୧ ।
ଭୃଂଗ ବଞ୍ଚିଲ ସଘନ ତରଳ ବେନି ।
ମୋ ନେତ୍ର ସମ୍ମତି କଲା ନୀରଜାନନୀ । ୧୨ ।
ତାରତର ମୋତିଦାମେ କଣ୍ଠରଞ୍ଜନ
ଯେବେ ହେ ଦୋଷାଧି ତାହା କରୁଛି ଧ୍ୟାନ । ୧୩ ।

ଶ୍ଳୋକଃ—ଅଦ୍ୟାପି ତାଂ ବିହସିତାଂ କୁଚଭାରନମ୍ରାଂ
ମୁକ୍ତାକଲାପବଳପ୍ରୀକୃତ-କଣ୍ଠମାଳାମ୍ (୩)
ତତ୍କେଳିମନ୍ଦିରଗତାଂ (୪) କୁସୁମାୟୁଧସ୍ୟ—
କାନ୍ତାଂ ସ୍ମରାମି ରୁଚିରୋଜ୍ଜ୍ୱଳପୁଷ୍ପକେତୁମ୍ (୫) ୩

---

(୧) ମାବଦ୍ଧନ୍ତୀଂ (ଗ) (୨) ସୁଦଙ୍ଗୀଂ (ଗ)
(୩) ଧବଳୀକୃତକଣ୍ଠମାଳାମ୍ (ଗ) (୪) ତତ୍ର କେଳିମନ୍ଦର-
ଗିରୌ (ଗ) (୫) ଧୂମକେତୁମ୍ (ଖ)

ଗୀତ—ଯେବେ ହେ ଚିନ୍ତୁଛି ମୋର ପ୍ରିୟାଶ୍ରୀମୁଖ
ଇଷିତ ହସେ ଯେ ଖଣ୍ଡେ ମଦନଦୁଃଖ । ୧୪ ।
ବହୁତ ଗୃହ୍ନି କହିଲେ ଯେହୁ ମୁଖରେ
କହଇ ପ୍ରେମମାଧୂରୀ ଅତି ରୁଚିରେ । ୧୫ ।
ଶୃଙ୍ଗାର ସମୟରେ ନେତ୍ର ଘୂର୍ଣିତ ତାର
ଶିଥିଳ ବସନ କେଶ ବେଶ ରୁଚିର । ୧୬ ।

ଶ୍ଳୋକଃ—ଅଦ୍ୟାପି ଗୃହ୍ନିଶତଦୁର୍ଲ୍ଲଭତୋଟିତାର୍ଥଂ
ତସ୍ୟାଃ ସ୍ମରାମି ସୁରତକ୍ଲମବିହ୍ୱଳ ଯ୍ୟାଃ ।
ଅବ୍ୟକ୍ତନିସ୍ୱନିତକାତରକଥ୍ୟମାନ—
ସଙ୍କୀର୍ଣ୍ଣବର୍ଣ୍ଣରୁଚିରଂ ବଦନଂ ପ୍ରିୟାୟାଃ । ୪ ।

ଗୀତ—ଲଳିତ ମଧୁର ଗୃହ୍ନି ଶତବଚନ
ସୁରତ ଦୁଃଖେ ବିକ୍ଳବ ହୋଇଛି ପୁଣ । ୧୭ ।
ଅବ୍ୟକ୍ତ ଅକ୍ଷର ତହିଁ ସ୍ଫୁଟ କାତର
ଯେବେ ଚିନ୍ତେ ମୁଁ ରୁଚିର ହାସ ତାହାର । ୧୮ ।

ଶ୍ଳୋକଃ—ଅଦ୍ୟାପି ତାଂ ସୁରତଘୂର୍ଣ୍ଣନିମୀଳିତାକ୍ଷୀଂ
ସ୍ରସ୍ତାଙ୍ଗଯଷ୍ଟିଗଳିତାଂଶୁକ କେଶପାଶାମ୍ ।
ଶୃଙ୍ଗାରବାରିରୁହକାନନରାଜହଂସୀଂ
ଜନ୍ମାନ୍ତରେଽପି ନିଧନେଽପ୍ୟନୁଚିନ୍ତୟାମି । ୫ ।

ଗୀତ—ସୁରତରସରେ ତାର ନେତ୍ର ଘୂର୍ଣିତ ।
ରୁଚିର ଅଙ୍ଗଯଷ୍ଟିରୁ ବାସ ଗଳିତ । ୧୯ ।
ଶୃଙ୍ଗାରଜଳପଙ୍କଜ ସେ ରାଜହଂସୀ
ଜନ୍ମ ଅନ୍ତରେ ଲଭିବ ମୁହିଁ ସୁକେଶୀ । ୨୦ ।

ଯେବେ ନଧନ ହେବାରୁ କାର୍ଯ୍ୟ ମୋହର
ଶୁଣ ହେ ଦୋପାଧ୍ୟ ବେଗେ ପତ୍ରଣ ହର । ୨୧ ।

ଶ୍ଳୋକଃ—ଅଦ୍ୟାପି ତାଂ ପ୍ରଣୟିନୀଂ ମୃଗଶାବକାକ୍ଷୀଂ
ପୀୟୂଷପୂର୍ଣ୍ଣକୁଚକୁମ୍ଭଯୁଗଂ ବହନ୍ତୀମ୍ ।
ପଶ୍ୟାମ୍ୟହଂ ଯଦି ପୁନର୍ଦିବସାବସାନେ ।
ସ୍ୱର୍ଗାପବର୍ଗନରରାଜ୍ୟସୁଖଂ ତ୍ୟଜାମି । ୭ ।

ଗୀତ—ରତି କେଳି ରସହାସୀ ମୋ ପ୍ରାଣପକ୍ଷୀ
ଜନ୍ମାନ୍ତରେ ନଧନେ ମୁଁ ଚିନ୍ତିବ ତାହି । ୨୨ ।
କୁରଙ୍ଗନୟନନୟନରୁ ପିକବଚନା
ପୀୟୂଷମ୍ଭରିତ ବେନି କୁଚେ ରଜନା । ୨୩ ।
ଯେବେ ଦିବାଶେଷେ ତାର ଦେଖିବି ମୁଖ ।
ସ୍ୱର୍ଗାପବର୍ଗ ସୁଖେଣ ହେବି ବିମୁଖ । ୨୪ ।

ଶ୍ଳୋକଃ—ଅଦ୍ୟାପି ତାଂ କ୍ଷିତିତଳେ ବରକାମିନୀନାଂ
ସର୍ବାଙ୍ଗସୁନ୍ଦରତୟା ପ୍ରଥମୈକରେଖାମ୍ ।
ସଂସାର (୧) ନାଟକରସୋତ୍ତମ ପାନପାତ୍ରୀଂ (୨)
କାନ୍ତାଂ ସ୍ମରାମି କୁସୁମାୟୁଧବାଣଖିନ୍ନାମ୍ । ୭ ।

ଗୀତ—ଅବନୀ ମଣ୍ଡଳେ ଯେତେ ଯେତେ ତରୁଣୀ ।
ସର୍ବାଙ୍ଗ ସୁନ୍ଦର ସେ ଯେ ସଖୀ ଅଗ୍ରଣୀ । ୨୫ ।
ଯେତେବେଳେ କରେ କାମ ସୁନ୍ଦରୀ ଲେଖା
ଆଗକରି କାଟଇ ମୋ ପ୍ରିୟାର ରେଖା । ୨୬ ।
ଜଗତ ନାଟକ ରସେ ଅତି ରୁଚିର,
ମଣିମୟ ପାତ୍ରୀ ଇଚ୍ଛା ଯୁବତୀବର ।୨୭।

(୧) ଶଙ୍କାର (ଗ) (୨) ପାନପାତ୍ରୀ (ଗ)

ଯେବେ ଯେ କୁସୁମେଷୁର ଶରରେ ଖିନ୍ନ
ହୋଇଥିବ ଚିନ୍ତୁ ଅଛି ମୋର ଜୀବନ ।୨୮।

ଶ୍ଳୋକଃ—ଅଦ୍ୟାପି ତାଂ ସ୍ତିମିତବସ୍ତ୍ରମିବାଙ୍ଗଲଗ୍ନାଂ
ପ୍ରୌଢ଼ପ୍ରତାପମଦନାନଳତପ୍ତଦେହାମ୍ ।
ବାଲାମନାଥଶରଣାମନୁକମ୍ପନୀୟାଂ
ପ୍ରାଣାଧିକାଂ କ୍ଷଣମହଂ ନହି ବିସ୍ମରାମି । ୮ ।

ଗୀତ—ଝୀନବାସ ତନ୍ତ୍ର ଯେହ୍ନେ ଲଗେ ଅଙ୍ଗରେ !
ତେସନେ ସେ ଜଡ଼ିଥାଇ ମୋର ଅଙ୍ଗରେ ।୨୯।
ଯେବେ ସେ ମୋର ବିଚ୍ଛେଦେ ଅନଙ୍ଗ ଦୁଃଖୀ
ଜୀବନ କି ଧରିଥିବ ଚନ୍ଦ୍ରମା ମୁଖୀ ।୩୦।
ଯେତ୍କେ ବାଳା ଅବଳା ସେ ତନୁକୋମଳା ।
ଅନାଥ ପରଯେ ହୋଇ ଥିବ ସୁଶୀଳା ।୩୧।
ତାର ଦୟାରେ ପବିତ୍ର କରେ ମୋ ଗାତ୍ର
ତେଣୁ ମୋର ଦୟାରସେ ଅଟଇ ପାତ୍ର ।୩୨।

ଶ୍ଳୋକଃ—ଅଦ୍ୟାପି ତାଂ ପ୍ରଥମତୋ ବରସୁନ୍ଦରୀଣାଂ
ସ୍ନେହୈକପାତ୍ରଘଟିତାବନିପାଳପୁତ୍ରୀମ୍ ।
ଦାହଜ୍ଵରଂ (୧) ମମ ବିୟୋଗହୁତାଶନାଖ୍ୟଂ (୨)
ସୋଢୁଂ ନ ଶକ୍ୟତ ଇତି ପ୍ରତିଚିନ୍ତୟାମି ।୯।

ଗୀତ—ପ୍ରାଣରୁ ଅଧିକ ସେ ମୋ ନବ କିଶୋରୀ
ଅନ୍ୟକ୍ଷଣେ ମନ ମୋ ନ ପାରେ ପାସୋରି ।୩୩।
ଶୃଙ୍ଗାର ଲାବଣ୍ୟ କଳାରସ ଯୋଜନା ।
ବିହି ବିଧାନ କରନ୍ତେ ରମଣୀଗଣ ।୩୪।

(୧) କଂହୋଜନା (ଗ) (୨) ହୁତାଶନୋସ୍ତ୍ରମ୍

ସକଳ ରସେ ସମ୍ପୂର୍ଣ୍ଣ କରି ମୋ ନାରୀ ।
ଅଗକରି ନିର୍ମାଣିଛି ସେ ଲୋକକାରୀ ।୩୫।
ସେ ବିଯୋଗ ହୁତାଶନ ତାପଜ୍ୱରର
ବାଧି କେଉଁରେ ସହିଥିବ ଚତୁରବର ।୩୬।
ସେବେ ହେ ତାହାର ବିନୁ ଏ ମୋର ମନ
ନଇଛଇ ନାନା କ୍ରୀଡ଼ା ବେଶ ବିଧାନ । ୩୭ ।

ଶ୍ଳୋକଃ—ଅଦ୍ୟାପି ବିସ୍ମୃତକଥା ବିଦଶାନ୍ ବିହାୟ
ବୁଦ୍ଧି ର୍ନିବୃନ୍ୟବିଷୟେ (୧) କ ମହଂ କରୋମି ।
ଜାନନ୍ନପି ପ୍ରତି ମୁହୂର୍ତ୍ତ ମିବ ନ୍ତ (୨) କାଲେ
କାନ୍ତେତି ବଲ୍ଲଭତମେତି ମମେତି ଧୀସ୍ । ୧୦ ।

ଗୀତ—ଯେହେ ରକହଇ ବହନ ଶୁଣ ହେ ଧୀର
ତୁମ୍ଭେ ହେ ବୋଲ ବିଦଶ ଛାଡ଼ି ପାମର । ୩୮ ।
ମୂହିଁକ ନଜାଣେ ସେହି କଥା ସକଳ
କାନ୍ତାର ପୀରତ ମୋର କେବଳ ସାର । ୩୯ ।

ଶ୍ଳୋକଃ—ଅଦ୍ୟାପି ତାଂ ଗମନମିତ୍ୟୁଦିତଂ ମଦୀୟଂ
ଶ୍ରୁତ୍ୱୈବ ଭୀରୁହରିଣୀମିବ ଚଞ୍ଚଳାକ୍ଷୀମ୍ ।
ବାଚଃସ୍ଖଲଦ୍ ବିଗଲଦଶ୍ରୁଜଲା କୁଳାକ୍ଷୀଂ
ସଂଚିନ୍ତୟାମି ଗୁରୁଶୋକ (୩) ବିନମ୍ରବକ୍ତ୍ରାମ୍ । ୧୧ ।

ଗୀତ—ଯେବେଣେ ଅନାଇଲେ ମୋତେ ଦଶଇ ସେହି ।
କ କରିବ ଯତୁଁ ନେତ୍ରେ ଅଛଇ ସେହି । ୪୦ ।

---

(୧) ବୁର୍ଦ୍ଧିଂ ବଲାତଲଭମେ (ଗ) (୨) ମଦ୍ଧାଭ (ଗ)
(୩) ଶୋକ (ଗ)

ଜାଣୁଛି ମୁଁ ଯିବ ଏହିକ୍ଷଣି ଜୀବନ ।
କାନ୍ତା ପ୍ରାଣପ୍ରିୟା ବୋଲି କରୁଛି ଧ୍ୟାନ । ୪୧ ।
ଯେବେ ମୋର ଗମନ ବିଷୟ ଶୁଣଇ
ସଭୟ ହରିଣୀ ପ୍ରାୟେ ନେତ୍ର କରଇ । ୪୨ ।
କହିବାକୁ ବଚନ ସେ କରଇ ଯେବେ ।
କମଳନୟନୁ ନୀର ମୁଞ୍ଚଇ ତେବେ । ୪୩
ଗୁରୁ ଦୋଷଭରେ ନମ୍ର କରି ବଦନ ।
ତାହା ଏବେ ହୋଇଛି ମୋ ସନ୍ତତ ଧ୍ୟାନ । ୪୪ ।
ଶ୍ଲୋକଃ—ଅଦ୍ୟାପି ତଂ କ୍ଷଣବିୟୋଗବିଷୋପମେୟାଂ
ସଙ୍ଗେ ପୁନର୍ବହୁତରଙ୍ଗ ମୃତାଭିଷେକାମ୍ ।
ସଞ୍ଜୀବ (୧)ଧାରଣକରୀଂ ମଦନାତଗାନ୍ତଂ (୨)
ତଂ ବ୍ରହ୍ମ କେଶବହରୈଃ (୩) ସୁଦତୀଂ ସ୍ମରାମି । ୧୨ ।
ଗୀତଃ—ଶୁଣ ଏବେ ଚିନ୍ତୁଛି ତା ଲବଣ୍ୟ ଅଙ୍ଗ
ମସୃଣ ଚନ୍ଦନ ପଙ୍କେ ଯେହ୍ନେ ସୁରଙ୍ଗ । ୪୫ ।
କସ୍ତୁରି ପଙ୍କରେ ମିଶି କରେ ଆମୋଦ
କ୍ଷଣରେ ନାଶଇ ମୋର ଅଙ୍ଗଖେଦ । ୪୬ ।
ସମ୍ମୁଖେ ଅଞ୍ଜନ ନେତ୍ର ରହି ଚୁମ୍ବନ ।
ତେସନ ପ୍ରାୟେକ ମୋର ପ୍ରିୟାଆନନ । ୪୭
ତାହା କରୁଅଛି କ୍ଷଣେ କ୍ଷଣେ ମୁଁ ଧ୍ୟାନ ।
ଏବେ ନାଅ ଦୋଷାଧିରେ ମୋର ଜୀବନ । ୪୮ ।
ଶ୍ଲୋକଃ—ଅଦ୍ୟାପି ତତ୍ ସୁଲଳିତଂ ସ୍ମରଣଂ (୪) ମୟାପି
ଦୃଷ୍ଟଂ ନ ତତ୍ (୫) ସଦୃଶଣେ ବଦନଂ କଦାଚିତ୍ ।

(୧) ତାଂଶବ (ଗ) (୨) ମଦନାତପଙ୍କାଂ (ଗ)
(୩) ଉଦ୍‌ବୃତ୍ତ କେଶନବଦ୍ଧାଂ (ଗ)
(୪) ତାଂ ସୁନପୁଣଂ ଯତତ (ଗ) (୫) ସତ୍ର (ଗ)

ତନ୍ନାନ୍ତନର୍ଜିତରଂ-ଦ୍ଵିଜଗ୍ରଜଚିହ୍ନଂ (୧)
କାନ୍ତଂ ନହନ୍ତ ଵବମର୍ଥବତାଂ ଗୁଣେନ (୨) । ୧୩ ।

ଗୀତ—ତା ବିଚ୍ଛେଦ କ୍ଷଣେ ଯୁଗ ହୁଅଇ ମୋର
ତା ସଙ୍ଗତ ରହି ହୁଏ ସୁଧା ଆକାର । ୪ ।
ସେ ମୋର ଜୀବ ଜୀବନେ ଅଟେ କାରେଣୀ
ସେ ମୋର କାମତପନ ତାପବାରେଣୀ । ୪୦ ।
ତା ବିନୁ ମୋର ସ୍ୱୟମ୍ଭୁ ଶମ୍ଭୁଙ୍କ ହରି
କାମ ଦୁସ୍ତର ସାଗରୁ କରିବେ ପାରି । ୫୧ ।
·ଏବେ ହେ ପଙ୍କଜଗୃରୁ ପ୍ରିୟାବଦନ
ନାହିଁ ନାହିଁ ତାର ସମ ମର୍ତ୍ତ୍ୟ ଭୁବନ । ୫୨ ।
ଯାର କାନ୍ତରେ ନର୍ଜିତ ଅମିପ୍ରୃକର
ସେ ସୁଧାକରରେ ଯହୁଁ ସ୍ୱର୍ଗ ରୁଚିର । ୫୩ ।
ତାହାଙ୍କୁ କେତେ ନନ୍ଦିଲା ଯେବକ୍ଷମୁଖ
ତାବିନୁ ମୋହର କାହିଁ ଲଭେ କ ସୁଖ । ୫୪ ।
ଗୋପୀ କଦମ୍ବ ବିହାରୀ ମୁରଲୀଧାରୀ ।
ଅଘ ତମିର ତପନ ଶାରଙ୍ଗଧାରୀ । ୫୫ ।
ସେ କୃଷ୍ଣ ବେନ ଚରଣ ପଙ୍କଜ ଚିନ୍ତ ।
ଏ ଗୀତ ରଚିଲେ ଧନଞ୍ଜୟ ନୃପତ । ୫୬ ।

---

(୧) ସୌନ୍ଦର୍ଯ୍ୟ ନର୍ଜିତରଚ୍ଛଦ୍ଵିଜଗଜକାନ୍ତଂ (ଗ)
(୨) କାନ୍ତା ମିହାଛ ବିମଲତ୍ଵ ମହାଗୁଣେନ (ଗ)

# ଦଶମ ଛାନ୍ଦ

## ରାଗ—ଚନ୍ଦ୍ରାଭୈରବ

**ଶ୍ଳୋକଃ**—ଅଦ୍ୟାପି ବାସଗୃହତୋ ମୟି ନୀୟମାନେ
ଦୁର୍ବାରଭୀଷଣକରୈଃ ଯମଦୂତକଲ୍ପୈଃ ।
କିଂ କିଂ ତୟା ବହୁବିଧଂ ନକୃତଂ ମଦେନ (୧)
ବକ୍ତୁଂନ ପାର୍ଯ୍ୟତ ଇତ ବ୍ୟଥତେ ମନୋ ମେ ।୧।

**ଗୀତ**— ଏଥୁ ଅନ୍ତରେ ଦୋସାଧୁ ଭଣି
ଏବେ ଶୁଣ ଦୃଷ୍ଟ ମୋର ବାଣୀ
ସ୍ତ୍ରୀଙ୍କ ଛାର ନାମ ଜମ୍ବୁ ତୁ ନଜାଣି
କି କେ ନ ବୋଲୁଛୁ ଚକ୍ରପାଣି
ରେ କୁମର ।୧।
ତୁ ରେ ହେଉଛୁ ଜାଣି ନଧନ,
ଏବେ ସୁମର ତୁ ନାରାୟଣ
ପୁଣ ପୁଣ ଇଚ୍ଛାବତୀ ନାମ ଧରୁ
ତୋର ଜାଣିଲି ମୁଁ ମୂଢ଼ପଣ
ରେ କୁମର ।୨।
ଶୁଣି ଏସନ ଦୋସାଧୁ ବାଣୀ
ଦୃଷ୍ଟ ଇଚ୍ଛା ଗୁଣ ହୃଦେ ଗୁଣି
ବୋଲଇ, ଦୋସାଧୁ ତୁ ଏଡ଼େ ଅଜ୍ଞାନ
କି କେ କହିଲୁ ଏସନ ବାଣୀ
ରେ ଦୋସାଧୁ ।୩।

---

(୧) ମଦର୍ଥେ (ଗ)

ନୃପ ତନୟ ବଡ଼ ସୁଲକ୍ଷଣ
କରେ ଘେନିଣ ତୀକ୍ଷ୍ଣ କୃପାଣ
ପ୍ରିୟା କେଳିପୁରୁ ମୋତେ ସେ ଆଣିଲେ
ମୁହିଁ କରନ୍ତେଣ ଆଲିଙ୍ଗନ
ରେ ଦୋସାଧୂ ।୮।

ସେହୁ ସମୟେ ଚନ୍ଦ୍ର ବଦନା
କ କ ନ କଲା ମୀନଲୋଚନା
ସେ ଭାବ ବଚନେ କହି ନ ପାରୁଛି
ତେଣୁ ଦହୁଛି ହୃଦ ବେଦନା
ରେ ଦୋସାଧୂ ।୯।

ଶ୍ଲୋକଃ—ଅଦ୍ୟାପି ମେ ନଶିଦନଂ (୧) ହୃଦୟଂ ଦୁନୋତି
ପୂର୍ଣ୍ଣେନ୍ଦୁ ସୁନ୍ଦରମୁଖଂ ମମ ବଲ୍ଲଭାୟାଃ ।
ଲାବଣ୍ୟ ନିର୍ଜିତ ରତି କ୍ଷତି କାମଦର୍ପଂ
ଭୂୟଃପୁନଃ (୨) ପ୍ରତି ମୁହୁ (୩) ର୍ନ ବିଲୋକ୍ୟତେ ଯତ୍ ।୨

ଗୀତ—ଏହି ସମୟେ ତାର ବଦନ
ସତେ ଦେଖିବ ମୋର ନୟନ,
ଜୀବର ଜୀବନ ସେ ମୋ ପ୍ରାଣଧନ
ଇଚ୍ଛାବତୀ ମୋ ହୃଦୟ ଭୂଷଣ
ହେ ଦୋସାଧୂ ।

---

(୧) ଦିବା (ଗ) (୨) ପୁରଃ (ଗ) (୩) ପଦଂ (ଗ)

ଏବେ ସ୍ୱଦେଶ- ବସ ମୋହର
ହୃଦ ହେଉଛି ଅତ କାତର
ମଦନ ଦର୍ପଣ ଗଞ୍ଜଇ ଯେ ମୁଖ
ତାହା ନ ଦେଖିଲି ମୋ ପ୍ରିୟାର
ହେ ଦୋସାଧ୍ରୁ ।୭।

କ୍ଷଣେ ଥିବାକୁ ଜୀବନ ମୋର
ତେଣୁ ନ କରଇ ମୁଁ ବିସ୍ମର
ଯାହାକୁ ହୃଦରୁ ଦଣ୍ଡେ ନ ତେଜଇ
ଏବେ ହୋଇଲି ସେ ଚିନ୍ତା ପର
ରେ ଦୋସାଧୁ ।୮। .

ଶ୍ଳୋକଃ—ଅଦ୍ୟାପି ତାମବହିତାଂହୃଦେତି ମନସା ବଲେନ
ସଂଚିନ୍ତୟାମି ସୁଦତୀଂ ମମ ଜୀବିତାଶାମ୍ ।
ନାନ୍ୟୋପଭୁକ୍ତ ନବଯୌବନ ଭାରସାରଂ
ଜନ୍ମାନ୍ତରେଽପି ମମ ସୈବ ଗତିର୍ଯଥା ସ୍ୟାତ୍ ।୬।

ଗୀତ—ଏବେ ବଳେ ଏ ମୋହର ମନ
ପ୍ରିୟେ ତୁମ କରୁଅଛିଧ୍ୟାନ
ମୋର ସେ ଜୀବନ ଈଶ୍ୱରୀ ନାଗରୀ
ତାକୁ ଭାବ ନମରଇ ଦାନ
ରେ ଦୋସାଧୁ ।୯।

ନୋହିଥିବ ଆନେ ଉପଭୋଗ ମୋର
ପ୍ରିୟା ସ୍ୱରୁ ଉରୁ ସ୍ତନ

ଜନ୍ମ ଜନ୍ମାନ୍ତରେ ସେ ମୋ ଗତ ହେବ,
ଏହା କରିବେଳ ଶିବ୍ଦାରଙ୍ଗ
ହେ ଦୋସାଧୁ ।୧୦।
ଶ୍ଳୋକଃ— ଅଦ୍ୟାପି ତଦ୍‌ବଦନପଙ୍କଜଗନ୍ଧଲୁବ୍‌ଧ-
ଭ୍ରାମ୍ୟଦ୍ଦ୍ୱିରେଫଚୟଚୁମ୍ବିତଗଣ୍ଡଦେଶାମ୍ ।
ଲୀଳାବଧୂତକରପଲ୍ଲବକଙ୍କଣାନାଂ
କ୍ୱାଣୋ ବିଲୁମ୍ପତ (୧) ମନଃ ସୁକୃତଂ ନଦାୟୁମ୍ ।୪।
ଗୀତ— ବନେ ଉପବନେ ବରବାଳା
କରୁଥିଲା ମୋତେ ଘେନି ଲୀଳା
ମୁଖପଦ୍ମରବେ ଭୃଙ୍ଗେ ଘୋଡ଼ାବନ୍ତେ
ମୋର ଅଙ୍ଗେ ମିଳଲା ଅବଳା
ହେ ଦୋସାଧୁ । ୧୧ ।
ତା'ର ସେ କେଳି କରୁଛି ଧ୍ୟାନ
ଫାଟି ନ ଯାଇ ଅଛି ଜୀବନ,
ନବାରନ୍ତେ କର କଙ୍କଣ ଧ୍ୱନି ତା
ମୋ'ର ମନ କରୁଛି ଉଚ୍ଛନ୍ନ
ହେ ଦୋସାଧୁ । ୧୨ ।
ଶ୍ଳୋକଃ—ଅଦ୍ୟାପି ସା ନଖପଦଂ ସ୍ତନମଣ୍ଡଳେଽପି
ଦତ୍ତଂ ମୟା ସ୍ମ ମଧୁପାନବିମୋହିତେନ ।
ଉଦ୍‌ଭିନ୍ନରୋମପୁଲକୈ ର୍ବହୁଭିଃ ସମନ୍ତା
ଜ୍ଜାଗର୍ତ୍ତି ରକ୍ଷୟତି ଲୋକୟତି ପ୍ରଯତ୍ନାତ୍ (୨) । ୫ ।

(୧) ବିମୂର୍ଚ୍ଛିତ (ଗ)
(୨) ରକ୍ଷିତ ବିଲୋକିତ୍ୱତ ସ୍ମରମ (ଗ)

ଗୀତ— ଯେତେକ ଦିନେ ପଲଙ୍କେ ଶୟନ
କରିଥିଲୁ ଆମ୍ଭେ ବେନି ଜନ
ମଧୁପାନ-ମତ୍ତେ ତା କୁଚମଣ୍ଡଳ
ତୀକ୍ଷ୍ଣ କରଜେ କଲି ଲେଖନ
ରେ ଦୋସାଧୁ । ୧୩ ।
ସେହି ଦୂତୀମାନଙ୍କ ବର
ଫୁଲଶରେ ଜାଳିଲା ଶରୀର
ଅନୁରାଗଭରେ ମତେ ଅନାଉଛି,
ନେଇ ନୋହି (ଛି ?) ସୁଖ ଦୁଃଖର
ରେ ଦୋସାଧୁ । ୧୪ ।
ଶ୍ଳୋକଃ—ଅଦ୍ୟାପି କୋପବିମୁଖୀକୃତଗନ୍ତୁକାମା
ନୋକ୍ତଂ ବଚଃ ପ୍ରତିଦଦାତି ଯଦୈବ ବକ୍ତୁମ୍ ।
ଚୁମ୍ବାମି, ରୋଦିମି, ଭୃଶଂ ପତିତୋଽସ୍ମି ପାଦେ
ଦାସ ସ୍ତବ ପ୍ରିୟତମେ ! ଭଜ ସଂସ୍ମରାମି । ୬ ।
ଗୀତ— ସେ ଯେ କେଳିକଳା ରତିସ ପୂର୍ଣ୍ଣି
ପୂର୍ଣ୍ଣକାମେ ବିମୁଖ ତରୁଣୀ
କହିଛି ନ କହି ସେ ମୋରେ ମାନଭରେ
ସେ ଯେ ବସିଲା ବରରମଣୀ
ରେ ଦୋସାଧୁ । ୧୫ ।
ସେ ଯେ ନୟନ-କମଳୁ ନୀର,
ବାମା ଢେଳିଲା ଯହୁଁ ସତ୍ୱର
ମୁଁ ତାରେ ବିନୟ ବଚନ ଯେତେକ
କହିଅଛି ଶୁଣ ମୋ ଉତ୍ତର
ରେ ଦୋସାଧୁ । ୧୬ ।

ତୋର ଦାସ ମୁଁ ଚତୁର୍ଥୀମଣି
ମୁଖେ ଚୁମ୍ବନ ଦିଅ ରମଣି
ଏତେ ବୋଲି ତା'ର          ଚରଣେ ପ୍ରଣାମ
କରି ଦେବାଇଲି ରଖ ସ୍ୱପନ
ରେ ଦୋସାଧୁ । ୧୭

ମୁଁ ଯେ ଏସନ ପ୍ରକାରେ ତାରେ,
ସୃଷ୍ଟି କଲି ବହୁତ ପ୍ରକାରେ
ଏଥକୁ ଯେ ମୋତେ          ଯାହା ବୋଲି ଅଛି
ତାହା ଚିନ୍ତୁଛି ଏବେ ଚିତ୍ତରେ
ରେ ଦୋସାଧୁ । ୧୮ ।

ଶ୍ଳୋକଃ—ଅଦ୍ୟାପି ଧାବତି ମନଃ କିମହଂ କରୋମି
ସାର୍ଦ୍ଧଂ ସଖୀଭିରପି ବାସଗୃହେ ପ୍ରିୟାୟାଃ (୧)
କାନ୍ତାଙ୍ଗ ସଙ୍ଗ(୨)-ପରିହାସ-ବିଚିତ୍ର ନୃତ୍ୟ-
କ୍ରୀଡ଼ାଭିରମ ଇହ ଯାତୁ ମଦୀୟକାଳଃ । ୭ ।

ଗୀତ— ଧନ୍ୟ ଅଟଇ ତା କେଳିଘର
ଦିବ୍ୟ ମଣିଗଣେ ମନୋହର
× × ହରି          ଅଗୁରୁ ଧୂପରେ
ସଉରଭେ ଭ୍ରମନ୍ତ ଭ୍ରମର
ରେ ଦୋସାଧୁ । ୧୯ ।

---

(୧) ସୁଦାକ୍ଷେ (ଗ)
(୨) କାନ୍ତା ସୁଗୀତ (କ)

ସଖୀଗଣ ନୃତ୍ୟ ଗୀତ ରସେ
ତହିଁ ଥିବ ବରବାଳା ପାଶେ
ଏସନ ଚିନ୍ତଣ ମୋ ମନ ଅଥିର
ନ ରସଇ ତ କେବଣ ରସେ,
ରେ ଦୋସାଧୁ । ୨୦ ।

ଶ୍ଲୋକଃ—ଅଦ୍ୟାପି ତାଂ ନ ଖଳୁ ବେଦ୍ମ୍ୟ କମୀଶପତ୍ନୀ
ଶାପଂଗତା ସୁରପତେ ରଥ କୃଷ୍ଣଲକ୍ଷ୍ମୀଃ ।
ଧାତା ଚ କିଂ ନୁ ଜଗତଃ ପରିମୋହନାୟ
ସା ନିର୍ମିତା ଯୁବତିରତ୍ନ(୧) ବଦୃଷ୍ଟଯୁକ୍ତା ବା । ୮ ।

ଗୀତ— ଏବେ ମୋ ମନେ ଜାଣି ନୁହଇ
ସେ କି ସୁନ୍ଦର ରୂପମା ଅଟଇ
କି ସେ ଶମ୍ଭୁ ସୁର- ପତିର ରମଣୀ
କିମ୍ବା କୃଷ୍ଣର ପ୍ରିୟା ହୁଅଇ
ରେ ଦୋସାଧୁ । ୨୧ ।
କିମ୍ବା ଯୁବତୀ-ମାନଙ୍କ ଧ୍ୱଜା
ହୋଇ ଜନ୍ମିଲା ବୋଲି-ତନୁଜା
କିମ୍ବା ତିନିପୁର- ମୋହନ ନିମିତ୍ତେ
ଧାତା ଅବନୀରେ କଲା ସୃଜା
ରେ ଦୋସାଧୁ । ୨୨ ।

ଶୋକଃ—ଅଦ୍ୟାପି ତାଂ ଜଗତି ବର୍ଣ୍ଣୟିତୁଂ ନ କଶ୍ଚିତ୍
ଶକ୍ନୋତି ଦୃଷ୍ଟସଦୃଶୀଂ ଚ ପରିଗ୍ରହଂ ମେ (୨) ।
ଦୃଷ୍ଟଂ ତୟୋଃ ସଦୃଶୟୋଃ ଖଳୁ ଯେନ ରୂପଂ
ଶକ୍ତୋ ଭବେଦ୍ ଯଦି ସ ଏବ ନରେ(୩)ନ ଚାନ୍ୟଃ ।୯।

(୧) ସ୍ତ୍ରୀଜାଙ୍ଗନା ଯୁବଜାସକ (କ)
(୨) ସତି ମୋହନାନ୍ତେ (କ) (୩) ସ ଖଳୁ ବର୍ଣ୍ଣୟିତୁମ୍ (ବ)

ଗୀତ— ତା'ର ପ୍ରତି ଅଙ୍ଗର ମାଧୁର୍ଯ୍ୟ
ଦେଖି ଧରିବ କେହୁ ଧଇର୍ଯ୍ୟ
ବଚନେ ଅବା ତା ବର୍ଣ୍ଣିବ ବିଧାତା
ଯେବେ ନୋହିବ ଦେଖି ଅଧୈର୍ଯ୍ୟ
ରେ ଦୋସାଧୁ । ୬୩ ।

ଯେହୁ ତାହାର ଲାବଣ୍ୟ ରୂପ
ଯେଣୁ ଅନଙ୍ଗର ମୋହକୂପ
ଯେହୁ ଦେଖିଥିବ ବର୍ଣ୍ଣାଇ ପାରିବ
କହି ନୋହିବ ତାହା ସ୍ୱରୂପ
ରେ ଦୋସାଧୁ । ୬୪ ।

**ଶ୍ଳୋକଃ**—ଅଦ୍ୟାପି ତନ୍ନୟନ-କଜ୍ଜଳମୁଜ୍ଜ୍ୱଲାସ୍ୟଂ (୧)
ବିଶ୍ରାନ୍ତ (୨) କର୍ଣ୍ଣଯୁଗଳଂ ପରିହାସହେତୋଃ ।
ପଶ୍ୟେ ତବାମ୍ବନ ନବୀନପୟୋଧରାଭ୍ୟାଂ (୩)
କ୍ଷୀଣଂ ବପୁର୍ଯଦି ନ ପଶ୍ୟତ, ମେ ନ ଦୋଷଃ ।୧୦।

ଗୀତ— ଏବେ ଚିନ୍ତଇ ବାଳା ନୟନ
ଯହିଁ ଶୋଭିଛି ଗୁରୁ ଅଞ୍ଜନ
ହାସ ହେତୁରେ ମୋ ଗଣ୍ଡରେ ଲଗାଇ
ତାର ସେ ଲୀଳା କରୁଛି ଧ୍ୟାନ
ରେ ଦୋସାଧୁ । ୬୫ ।

---

(୧) ମଞ୍ଜୁଲପକ୍ଷ୍ମଃ (କ) (୨) ବିସ୍ତାର (ଖ)
(୩) ପଶ୍ୟାମି ବର୍ତ୍ତିତ କ ସୁପୀନପଟସ୍ତନାର୍ଥ୍ୟାଂ (ଖ)

ପୁଣି ଚିନ୍ତୁଛି ତା ପୟୋଧର
ଶ୍ୟାମ ମୁଖରେ ଯେ ମନୋହର
ତାହା ଚିନ୍ତି ଚିନ୍ତି ଜୀବ ଯେବେ ଯିବ
କସ ଦୋଷ ହୋଇବ ତାହାର
ରେ ଦୋସାଧ । ୨୬ ।

ଶ୍ଳୋକଃ—ଅଦ୍ୟାପି ନିର୍ମଳ-ଶରଚ୍ଛଶିଗୌରକାନ୍ତି-
ଶ୍ଚେତୋ ମୁନେରପି ହରେତ୍ କମୁତାସ୍ୟ ଧୀୟମ୍ ।
ବକ୍ତ୍ରଂ ସୁଧାମୟମହଂ ଯଦି ତତ୍ ପ୍ରପଦ୍ୟେ (୧)
ଚୁମ୍ବନ୍ ପିବାମ୍ୟବିରତଂ ବ୍ୟଥତେ ମନୋ ମେ ।୧୧।

ଗୀତ— ଯେଉନ୍ତେ ଶରଦ ଶଶୀ ନିର୍ମଳ
ମୁନିଚିତ୍ତ ତେସନ ଅମଳ
ସେ ଚିତ୍ତ ଯହିଁ ମୁ- ଖରେ ବଶ କଲା
କ୍ଷମା ନ କରିବ ମୋତେ ଲୋଳ
ରେ ଦୋସାଧୂ । ୨୭ ।

ନିଶା ପ୍ରବୃତ୍ତେ ସେ ଚନ୍ଦ୍ରମୁଖ
ଯେଣୁ ଚୁମ୍ବନେ ଲଭିଲ ସୁଖ
ତେଣୁ କରି ଏବେ ଜ୍ୱର ଅବିରତେ
ସେହି ଚିନ୍ତାରେ ଲଭୁଛି ଦୁଃଖ
ରେ ଦୋସାଧୂ । ୨୮ ।

ଶ୍ଳୋକଃ—ଅଦ୍ୟାପି ତତ୍କମଳରେଣୁସୁଗନ୍ଧଗନ୍ଧ
ତତ୍ପ୍ରେମବାରି ମକରଧ୍ୱଜପାତକାରି ।
ପ୍ରାପ୍ନୋମ୍ୟହଂ ଯଦି ପୁନଃ ସୁରତୈକତୀର୍ଥଂ
ପ୍ରାଣାଂସ୍ତ୍ୟଜାମି ନିୟତଂ ତଦବାପ୍ତି ହେତୋଃ । ୧୨ ।

(୧) ପ୍ରପଦ୍ୟ (କ)

ଗୀତ— ପଦ୍ମ ରେଣୁ ସୁଗନ୍ଧ ବଦନ
ପ୍ରେମଜଳ ଅନଙ୍ଗ ପାବନ
ସୁର-ତରଙ୍ଗିଣୀ ସେ ମୋର ହୋଇଲା
ତେଣୁ ଜାଣ ସେ ତୀର୍ଥ ସ୍ନାନ
ରେ ଦୋସାଧୁ । ୨୯ ।

ଯେବେ ନ ପାଇବି ତା ସଙ୍ଗମ
ଶୁଣ କହୁଛି କରି ନିୟମ
ତେଜିବି ଜୀବନ ପରଜନ୍ମେ ତାକୁ
ପାଇବି ମୁଁ ହୋଇଣ ସକାମ
ରେ ଦୋସାଧୁ । ୩୦ ।

ଶ୍ଳୋକଃ—ଅଦ୍ୟାପି ସା ଜଗତି ସୁନ୍ଦରଲକ୍ଷପୂର୍ଣ୍ଣୈ
ର୍ନ୍ୟୋନ୍ୟମୁତ୍ତମଗୁଣାଧିକସଂପ୍ରସନ୍ନେ । (୧)
ଅନ୍ୟାଭିରପ୍ୟୁପମିତୁଂ ନ ମୟାପି ଶକ୍ୟଂ
ରୂପଂ ତଦୀୟମିତି ମେ ହୃଦୟେ ବିତର୍କଃ (୨) । ୧୩ ।

ଗୀତ— ଜଗତରେ ସୁନ୍ଦରୀ ଯୁବତୀ
କେତେ ନାହାନ୍ତି ଅବା ସୁମତି
ତାଙ୍କ ମଧ୍ୟେ ସର୍ବ ଗୁଣରେ ଅଧିକ
ମୋର ପ୍ରାଣପ୍ରିୟା ଇଚ୍ଛାବତୀ
ରେ ଦୋସାଧୁ । ୩୧ ।

---

(୧) ସ୍ୱପନ୍ନେ (ଖ) (୨) ବାମାଙ୍ଗମେବକ୍ଷ ଦରେରପି ଦକ୍ଷିଣାଙ୍ଗମ୍ (ଗ)

ଯେବେ ଯେବେ ତାହାଙ୍କୁ ପାଇବ
କ୍ଷଣେ ଅନ୍ତରହିଁ ନ କରିବ
ବାମ ଅଙ୍ଗେ ହର ବହିଛି ପ୍ରିୟାକୁ
ମୁଁ ଯେ ଦକ୍ଷିଣ ଅଙ୍ଗେ ବହିବ
ରେ ଦୋସାଧ । ୩୨ ।

ଶ୍ଳୋକଃ—ଅଦ୍ୟାପି ସା ମମ ମନସ୍ତଟିନୀ ସଦାସ୍ତେ
ରୋମାଞ୍ଚବୀଚିବିଲସଦ୍-ଚପଳସ୍ୱଭାବା ।
କାଦମ୍ବକେଶରରୁଚିଃ କ୍ଷତବୀକ୍ଷଣଂ ମାଂ
ଗାଢ଼କ୍ଲମଂ କଥୟତ ପ୍ରିୟରାଜହଂସୀ । ୧୪ ।

ଗୀତ— ମୋର ଅଙ୍ଗ କାଣ ତରଙ୍ଗିଣୀ
ସଇବାଳ ଲତିକା ରମଣୀ
ହାସ-କଇରବ କୁଚ-ଚକ୍ରବାକ
ଭୂରୁ ନୟନ ମୀନରଞ୍ଜନୀ
ରେ ଦୋସାଧୁ । ୩୩ ।
ରାଜମରାଳୀ 'ଇଚ୍ଛା' ସୁନ୍ଦରୀ
କାମକମଳା-ବରବହାରୀ
ରହ ରହ ଶେଷେ ଯାହା କରିଅଛି
ତାହା ଚିନ୍ତ କେ ପାରୁ ବତୋରି
ରେ ଦୋସାଧୁ । ୩୪ ।

ଶ୍ଳୋକଃ—ଅଦ୍ୟାପି ତାଂ ନୃପତଶେଖର-ରାଜପୁତ୍ରୀଂ
ସମ୍ପୂର୍ଣ୍ଣଯୌବନମଦାଲସଘୂର୍ଣ୍ଣନେତ୍ରୀମ୍ । (୧)

(୧) ଭୁଜଗାଙ୍କମ୍ (ବ)

ଗନ୍ଧର୍ବଯକ୍ଷସୁରକିନ୍ନରନାଗ(୧)କନ୍ୟାଂ
ସ୍ୱର୍ଗାଦହୋ(୨)ନପତିତାମିବ ଚିନ୍ତୟାମି । ୧୫ ।

ଗୀତ— ନୃପତିଳକ-ନନ୍ଦିନୀ ବାଳା,
ପୀନ ଉରଜ ଘୁଞ୍ଚୁକୁନ୍ତଳା
ମଦନ ଅଳସେ ଅଙ୍ଗବିରଙ୍ଗିତ
ସେ ମୋ କଣ୍ଠତଟ ରତ୍ନମାଳା
ରେ ଦୋସାଧୁ । ୩୫ ।
ସେ କି ଅମର-ପୁରମଣ୍ଡନୀ
ଖସି ପଡ଼ିଛି ଆସି ଧରଣୀ
ରତି ରଙ୍ଗେ ମୁହିଁ ମାଗଇ ଯେତେକ
ମୋତେ ହୋଇଥାଇ ଚିନ୍ତାମଣି
ରେ ଦୋସାଧୁ । ୩୬ ।

ଶ୍ଳୋକଃ—ଅଦ୍ୟାପି ତାଂ ନଳିବଧୂଃ କୃଶ(୩)ବେଦିମଧ୍ୟା
ମୁକ୍ତାଙ୍ଗସଙ୍ଗତସୁଧାସ୍ତନକୁମ୍ଭୟୁଗ୍ମାମ୍
ନାନାବିଚିତ୍ରକୃତମଣ୍ଡନ ମଣ୍ଡିତାଙ୍ଗୀଂ
ସୁପ୍ତୋତ୍‌ଥିତାଂ ନିଶି ଦିବା ନ ହି ବିସ୍ମରାମି । ୧୬ ।

ଗୀତ— ଏବେ ମୁଁ ଚିନ୍ତଇ ସୁନ୍ଦରୀବର
ନାନା ମଣ୍ଡନେ ଶୋଭେ ଶରୀର
ନିଜ ନିବିଡ଼ରେ ଶୋଇ ଉଠିବାରେ
ବାଳା ମଧ୍ୟ ବେଦୀ ପରକାର
ରେ ଦୋସାଧୁ । ୩୭ ।

---

(୧) ସିଦ୍ଧ (କ)
(୨) ସାକ୍ଷାଦିହଂ (କ) (୩) କଳବଳାକୃତ (କ)

ଉତ୍ତୁଙ୍ଗ ସୁଧା ସମ୍ଭୃତ ସ୍ତନ
କୁମ୍ଭ ଯୁଗଳ କଟିକ୍ଷୀଣ
କ୍ଷୟନ୍ତୁ ଭୂଷିତ ନୟନୁ ମିଳତ
ମନୁ ମୋ ନୁହଇ ବିସ୍ମରଣ
ରେ ଦୋସାଧୁ । ୩୮ ।

ଶ୍ଳୋକ—ଅଦ୍ୟାପି ତାଂ କନକକାନ୍ତିମଦାଲସାଙ୍ଗୀଂ
ବ୍ରୀଡ଼ୋତ୍ସୁକାଂ ନିପତିତାମିବ ଚେଷ୍ଟମାନାମ୍ ।
ଅଙ୍ଗାଙ୍ଗସଙ୍ଗପରିଚୁମ୍ବନଜାତ(୧)ମୋହାଂ
ତାଂ ଜୀବ(୨)ନୌଷଧିମିବ ପ୍ରମଦାଂ ସ୍ମରାମି । ୧୭ ।

ଗୀତ— ଯେବେ ସେ ରୂପ କରୁଛି ଧ୍ୟାନ
ଜାଣେ ଦହନ୍ତ ସୁବର୍ଣ୍ଣ ବର୍ଣ୍ଣ
ମଦନ ଅବଶେ ଅଳସିତଅଙ୍ଗ
ଲାଜେ ଘୂର୍ଣ୍ଣିତ ବେନି ନୟନ
ରେ ଦୋସାଧୁ । ୩୯ ।

ଅଙ୍ଗ ଅଙ୍ଗଲଗ ମୋ ପ୍ରିୟାର
ମୋହ କରଇ ସେ ତନପୂର
ସେ ମୋର ନୟନ- ପ୍ରତିମା ସୁନ୍ଦରୀ
ନେହ ଥିଲେ ମୁଁ ଅନ୍ଧ ଆକାର
ରେ ଦୋସାଧୁ । ୪୦ ।

---

(୧) ଲଗ୍ନ (କ) (୨) ସଞ୍ଜୀବ (କ)

**ଶ୍ଳୋକଃ**—ଅଦ୍ୟାପି ତତ୍ ସୁରତକେଳିନିରସ୍ତଯୁଦ୍ଧଂ(୧)—
ବନ୍ଧୋପବନ୍ଧ(୨)ପତନୋତ୍ଥିତ ଶୂନ୍ୟହସ୍ତମ୍ ।
ଦନ୍ତୌଷ୍ଠପୀଡନନଖକ୍ଷତରକ୍ତସିକ୍ତଂ
ତସ୍ୟାଃ ସ୍ମରାମି ରତିବନ୍ଧୁରନିଷ୍ଠୁରତ୍ୱମ୍ । ୧୮ ।

**ଗୀତ**— ତାର ମୋର ସୁରତ ସମରେ
ଘୋର ନଖଦନ୍ତ ତୀକ୍ଷ୍ଣ ଶରେ
ଶୋଣିତେ ଅଙ୍କିତ ବେନି ଉରସ୍ଥଳ
ତାହା ବିସୋରି ନୋହେ ମନରେ
ରେ ଦୋସାଧୁ । ୪୧ ।
ରଣ ରଣ ନୂପୁର ଶବଦ
ସେହୁ ବଢ଼ାଇ ଅନଙ୍ଗ ଖେଦ
ତାହା ଚିନ୍ତା କରୁ କରୁ ଯେବେ ମୋର
ବେଳୁ ବେଳ ପଡ଼ୁଛି ପ୍ରମାଦ
ରେ ଦୋସାଧୁ । ୪୨ ।

**ଶ୍ଳୋକ**—ଅଦ୍ୟାପି ତାଂ ବିପୁଲଲୋଲବିଶାଳନେତ୍ରାଂ
ଶୀତାଂଶୁମଣ୍ଡଳମୁଖୀଂ କୁଟିଳାଳକାନ୍ତାମ୍ ।
ମତ୍ତେଭକୁମ୍ଭସଦୃଶସ୍ତନଭରନମ୍ରାଂ
ବନ୍ଧୂକପୁଷ୍ପସଦୃଶୌଷ୍ଠପୁଟୀଂ ସ୍ମରାମି । ୧୯ ।

**ଗୀତ**— ଯେତେ ରମଣୀ ବର ଶୃଙ୍ଗାର
ମନୁ କେବେହେ ନୋହେ ବିସୋର
ଜଗତ୍ରୟ ସୁଖ ମନେ ବିଚାରିଲେ
ମୋର କେବେ ନୋହେ ସୁଖକର
ରେ ଦୋସାଧୁ । ୪୩ ।

(୧) ଖଣ୍ଡ (କ) (୨) ମନ୍ୟୋନ୍ୟବାଦ (ଖ)

ଯେବେ କରିବୁ ମୋତେ ନିଧନ
ତେବେ ହେବ ମୋ ଜୀବନ ଧନ୍ୟ
ନାକପୁରେ ଯାଇ          ମୋ ପ୍ରିୟା ସୁରତ
ଗୁଣ ପୁଣ କରିବି ବଖାଣ
ରେ ଦୋସାଧୁ । ୪୪ ।

ଶ୍ଳୋକଃ—ଅଦ୍ୟାପ୍ୟହଂ ବରବଧୂସୁରତୋପଭୋଗଂ
ଜୀବାମି ନାନ୍ୟବଧିନା କ୍ଷଣମନ୍ତରେଣ ।
ତଦ୍‌ଭ୍ରାତର୍ମରଣମେବ ହି ଦୁଃଖଶାନ୍ତ୍ୟୈ
ବିଜ୍ଞାପୟାମି ଭବତ ତ୍ୱରିତଂ ଲୁନୀହି ମାମ୍ । ୨୦ ।

ମୋର ନାହିଁ ମରଣରେ ଚିନ୍ତା
ତନୁ ପାଇବ ଯେବେ ବଞ୍ଚିନ୍ତା
ନଭଅଂଶେ ଭୂତ-          ଗଣେ ଲୀନ ହେଉ
ମୋତେ ଏମନ୍ତ କରୁ ବିଧାତା
ରେ ଦୋସାଧୁ । ୪୫ ।
ତାର ଲୀଳା ଗମନ ଯହିଁ
ତହିଁ ଯାଉ ରହୁ ମୋ ଧରଣୀ
ପ୍ରିୟାଲାଗି ଯେବେ          ଏ ପ୍ରାଣ ତେଜିବି
ତେବେ ହେବି ରସିକ-ଅଗ୍ରଣୀ
ରେ ଦୋସାଧୁ । ୪୬ ।

ଶ୍ଳୋକଃ—ଅଦ୍ୟାପି ନୋଜ୍‌ଝତି ହରଃ କିଲ କାଳକୂଟଂ
କୂର୍ମୋ ବିଭର୍ତ୍ତି ଧରଣୀଂ ଖଲୁ ପୃଷ୍ଠକେ (୧)
ଅମ୍ଭୋନିଧି ର୍ବହତି ଦୁଃସହବାଡ଼ବାଗ୍ନି-
ମଙ୍ଗୀକୃତଂ ସୁକୃତିନଃ ଖଲୁ (୨) ପାଳୟନ୍ତି । ୨୧ ।

(୧) ପୃଷ୍ଠଦେଶେନ (କ)   (୨) ପରି (ଗ)

ଗୀତ—

ତୁ ରେ ବୋଇଲୁ ଦୋସାଧୁ ଶୁଣ
କ୍ଷମା ହୋଇଛୁ ଏସନ ବୁଦ୍ଧି
ଦେଖ ମହା ଜନ    ଯାହା ବୋଲଇ ସେ
ସେହୁ କେବେହେଁ ଆନ ନୁହଇ
ରେ ଦୋସାଧୁ । ୪୭ ।

ଦେଖ ଯାହା ସେ ହର ବୋଇଲେ
ଗର ଉତ୍ପତ୍ତି ହେଲେ ଭକ୍ଷିଲେ
ଦେଖ ବିଷ୍ଣୁ ସ୍ୱଇ    କରି କୂର୍ମ ହୋଇ
ପୃଥ୍ୱୀ ପୃଷ୍ଠଦେଶରେ ଧଇଲେ
ରେ ଦୋସାଧୁ । ୪୮ ।

ଦେଖ ଦୁଃସହ ବଡ଼ବାନଳ,
ଏହୁ ସହଜେ ଅଟେ ପ୍ରଜ୍ୱଳ
ସତ୍ୟ କରି ତାହା    ବହିଛି ସାଗର
ସେ କ (?) ଭକ୍ଷିଲେ ସକଳ ଜଳ
ରେ ଦୋସାଧୁ । ୪୯ ।

ସେହୁଣୁ ମୁଁ ତାକୁ ବୋଲିଛି ଯାହା
ପ୍ରାଣ ଗଲେ ନ ଟେକିବ ତାହା
ଶତ ଜନ୍ମେ ଯେବେ    ହୋଇବ· ରେ ମୁହିଁ
ଇଚ୍ଛା ବିନୁ ଆନରେ ସେନେହା
ରେ ଦୋସାଧୁ । ୫୦ !

ଯେମନ୍ତରେ ନଶି ହୋଏ ଶେଷ
ପ୍ରାଚୀ ଦିଗ ମଣ୍ଡଳେ ଦିନେଶ
ସୁରପୁରୁ ଏହି ସମୟେ ବାହାରି
ମର୍ତ୍ତେ ହୋଇଲେ ବ୍ରହ୍ମାଙ୍କ ଶିଷ
ହେ ସୁଜନେ । ୬୧ ।

ଦେଖି ନୃପତି ପ୍ରଣାମ କଲେ
ଦିବ୍ୟ ଆସନ ଦେଇ ପୂଜିଲେ
ଆଜ ମୋର କୁଲ ଜନମ ସଫଳ
ତୁମ୍ଭ ଦର୍ଶନ କି ପୁଣ୍ୟବଳେ
ହେ ହେ ମୁନି । ୬୨ ।

କେଉଁ କାରଣେ ମୋ ପୁରେ ଆସି
ଯେବେ ମିଳିଲ ହେ ବ୍ରହ୍ମଋଷି
ମୁଁ କିସ କରିବି ଆଜ୍ଞା ମୋତେ ହେଉ
ମୁଁ ଯେ ତୋ ପାଦ ସେବାଭିଳାସୀ
ହେ ହେ ମୁନି । ୬୩ ।

ହସି କହନ୍ତି ସେ ତପୋଧନ
ଯେହୁ କାରଣେ ଆମ୍ଭ ଗମନ
ତୋର ସୁତା ଇଚ୍ଛା- ବତୀ ସୁର-ନାରୀ
ଇନ୍ଦ୍ରଶାପେ ଲଭିଛି ଜନମରେ
ହେ ରାଜନ । ୬୪ ।

ଯେହୁ ପତି ସେ ଗନ୍ଧର୍ବବର
ଯେହ୍ନୁ ବେନିଜନେ ଜାତିସ୍ମର
ପୂର୍ବ ରତି ସ୍ଥିତ ଜାଣି ସେ ନୃପତି-
ସୁତ ପ୍ରବେଶ୍ୟ ତୋର ନଗର
ହେ ରାଜନ ।୫୫ ।

ଯେବେ ଦେଖିଲୁ ଏ ବିପରୀତ
ତୋର ପୁରେ ହୋଇଛି ବିଦିତ
ପୂର୍ବ ପ୍ରାଣପ୍ରିୟା ସଙ୍ଗ ସେ ଲଭିଲା
ତାକୁ କମ୍ପାଇଁ କରୁଛୁ ହତ
ହେ ରାଜନ । ୫୬ ।

ଯେହୁ ଶୁଣି ବୋଲେ ନୃପମଣି
ମୁହିଁ ଏମନ୍ତ ନ ଥିଲି ଜାଣି
ସେ ବେନି ସଙ୍ଗତ କରିଛି ବିଧାତା
ତାହା କେ ଆନ କରିବ ପୁଣି
ହେ ଶ୍ରେ ମୁନି । ୫୭ ।

ଶୁଣି ଏସନ ନୃପତି-ବାଣୀ
ହସି ବୋଲନ୍ତି ନାରଦେ ପୁଣି
ସୁତ ଇନ୍ଦୁମତୀ ବିଭା କରାଅ ସେ
ଲଭୁ ତାହାର ପ୍ରାଣମିତଣୀ
ହେ ରାଜନ । ୫୮ ।

ଯେତେ ବୋଲି ଗଲେ ସୁରପୁର
ଏଥୁ ଅନନ୍ତରେ ନୃପବର
ଶୁଭଦିନ ଆଣି 'ଇଚ୍ଛା'ଙ୍କୁ ବିଭା କଲେ
ମନେ ହେଲେ ଆନନ୍ଦ ଅପାର
ହେ ସୁଜନେ । ୫୯ ।

ନାନା ବିନୋଦେ ସେ ଦେବଜନ
ନୃପପୁରେ ବଞ୍ଚିଲେ ସେ ଦିନ
ପୂର୍ଣ୍ଣି କେତେଦିନ ଅନ୍ତେ ମଧୁପୁରରେ
ନାନା ସମ୍ଭାରେ କଲେ ଗମନ
ହେ ସୁଜନେ । ୬୦ ।

ନାନା ରସେ ଇଚ୍ଛା ମଧୁକର
ହେଲେ ଅନଙ୍ଗ କୂପରୁ ପାର
ଇଚ୍ଛାବତୀ ଗ୍ରନ୍ଥ ଲୀଳା ଦର୍ଶ ଗ୍ରନ୍ଥ
ଶେଷ ରସିକ ହୃଦୟହାର
ହେ ସୁଜନେ । ୬୧ ।

ଯୋଗୀ-ନୟନ-ଚକୋର-ଇନ୍ଦୁ
ଦୁଃଖିଜନ ଅକାରଣ-ବନ୍ଧୁ
ଚିନ୍ତିତ ଜନର ହୃଦ-ଚିନ୍ତାମଣି
ଭକ୍ତଜନର ଅମୃତସିନ୍ଧୁ
ହେ ସୁଜନେ । ୬୨ ।

ନୀଳ ଶିଖରେ ସେ ବ୍ରହ୍ମ ରଷି
ଦାରୁ ସ୍ୱରୂପେ ଅଛନ୍ତି ବସି
ଭୁକତ ମୁକତ ଦରଶନେ ଯା'ର
ହେଲେ ଲଭନ୍ତି ସେ ବ୍ରହ୍ମପୁରୀ
ହେ ସୁଜନେ । ୭୩ ।

ଯହୁଁ ପାଦପଦ୍ମ ମଧୁକର
ହୋଇଛନ୍ତି ବ୍ରହ୍ମ ସୁରନର
ସେ ପାଦ-ପଦ୍ମ ଯୁଗଳେ ଧନଞ୍ଜୟ
ମନ ହୋଇଅଛି ଧ୍ୟାନପର
ହେ ସୁଜନେ । ୭୪ ।

---

ସମାପ୍ତ

# ଶ୍ଳୋକମାନଙ୍କର ଅନ୍ୱୟ ଓ ଅର୍ଥ

ପୃ-୨୬—(ଅନ୍ୱୟଃ) ରଙ୍ଗାସ୍ପଦେ ! କାମକଳାକଳାପେ ! ସଙ୍ଗୀତ-ବିଦ୍ୟାରସିକେ ! ଅମ୍ବୁଜାକ୍ଷି ! ହେମପ୍ରଭେ ! ସ୍ଫୁରନ୍ନିତମ୍ବ-ବିମ୍ବେ ! ବିମ୍ବୋଷ୍ଠି ! ରମ୍ଭୋରୁ ! ମୟି (ତ୍ୱଂ) ପ୍ରସୀଦ ।୧।

ଅର୍ଥ—ହେ ରଙ୍ଗପୂର୍ଣ୍ଣେ, କାମକଳାସମୃଦ୍ଧ, ସଙ୍ଗୀତବିଦ୍ୟା-ରସିକେ, ପଦ୍ମନେତ୍ରି, ସ୍ୱର୍ଣ୍ଣପ୍ରଭେ, ସୁନ୍ଦରନିତମ୍ବିନି, ବିମ୍ବୋଷ୍ଠି ରମ୍ଭୋରୁ, ମୋଠାରେ ତୁମ୍ଭେ ପ୍ରସନ୍ନ ହୁଅ । ୧ ।

ପୃ-୨୭—(ଅନ୍ୱୟଃ) ହେ ବାଲେ ! ଅବଲାରତ୍ନ ! ଦସ୍ପାର୍ଦ୍ଧଶଙ୍ଖେ ! ପ୍ରାଣେଶ୍ୱରି ! ଶ୍ରୀମତି ! ସୁପ୍ରସନ୍ନେ ! ସୁନ୍ଦରି ! ସତ୍କନ୍ୟେ ! ମୃଗାକ୍ଷି ! (ଅହଂ) ତେ ଦାସଃ ଅସ୍ମି, ମେ ପ୍ରାଣାନ୍ ତୁ (ତ୍ୱଂ) ରକ୍ଷାଂ କୁରୁ । ୨ ।

ଅର୍ଥ—ହେ ବାଲେ, ହେ ସ୍ତ୍ରୀରତ୍ନ, ହେ ଦସ୍ପାର୍ଦ୍ଧଶଙ୍ଖେ, ହେ ପ୍ରାଣେଶ୍ୱରି, ହେ ଶ୍ରୀମତି, ହେ ସୁପ୍ରସନ୍ନେ, ହେ ସୁନ୍ଦରି, ହେ ସତ୍କନ୍ୟେ, ହେ ମୃଗନେତ୍ରି, ମୁଁ ତୁମ୍ଭର ଦାସ, ମୋ ପ୍ରାଣକୁ ତୁମ୍ଭେ ରକ୍ଷା କର ।୨।

ପୃ-୨୭—(ଅନ୍ୱୟଃ) ହେ ପାନ୍ଥ ! ଚନ୍ଦ୍ରାଙ୍କିତାଢମୃତ୍ ! ଅବଲାଂ ତୃଣାଙ୍ଗୀ ବାଲାଂ ତ୍ୱଂ (ତ୍ୱଂ) ସ୍ତ୍ରୌଷି, ଯଦ (ତ୍ୱଂ) ଅର୍ଥଂ ପ୍ରାର୍ଥୟସେ (ତଦା) ଋଣଂ ଭଜ, ମୋକ୍ଷଂ ଚ (ଯଦ ପ୍ରାର୍ଥୟସେ ତଦା ତ୍ୱଂ ) ଅମ୍ବୁଜାକ୍ଷଂ ଲକ୍ଷ୍ମୀପତିଂ (ଭଜ) । ୩ ।

ଅର୍ଥ—ଚିନ୍ତାକୁଳ ହେତୁ ଅତ୍ୟନ୍ତ ମୂର୍ଖ, ହେ ପଥିକ ! କୃଶାଙ୍ଗୀ ଓ ବଳରହିତ ବାଳାକୁ କାହିଁକି ସ୍ତୁତି କରୁଅଛ ? ଯଦି ତୁମ୍ଭେ ଧନ ପ୍ରାର୍ଥନା କରୁଅଛ, ତେବେ ଶଙ୍କରଙ୍କୁ ସେବା କର, ମୋକ୍ଷ ର ପ୍ରାର୍ଥନା ଥିଲେ ପଦ୍ମନେତ୍ର ଲକ୍ଷ୍ମୀପତିଙ୍କୁ ସେବା କର । ୭ ।

ପ୍ର-୨୮—(ଅନ୍ୱୟଃ) ସୁବର୍ଣ୍ଣବର୍ଣ୍ଣେ ! ଅତ୍ର ତ୍ୱଂ ଏବ (ମେ) ଧନଂ, ସ୍ତୀରତ୍ନଭୂତେ ! ମମ ରତ୍ନଭୂଷା (ତ୍ୱମେବ) ଭୂପସୁତେ ! ପ୍ରସନ୍ନେ ! ତେ ସେବା ଅପି ସୌଖ୍ୟପ୍ରଦଃ, ମୋକ୍ଷଦ-ବାସୁଦେବଃ (ନ ତୁ ସୌଖ୍ୟପ୍ରଦଃ) । ୮ ।

ଅର୍ଥ—ହେ ସ୍ୱର୍ଣ୍ଣବର୍ଣ୍ଣେ, ସଂସାରରେ କେବଳ ତୁମ୍ଭେ ମୋର ଧନ, ହେ ସ୍ତୀରତ୍ନସ୍ୱରୂପେ ! ମୋର ରତ୍ନାଳଙ୍କାର ମଧ୍ୟ ତୁମ୍ଭେ, ହେ ରାଜପୁତ୍ରି ! ପ୍ରସନ୍ନେ ! ତୁମ୍ଭର ସେବା ମଧ୍ୟ ଆନନ୍ଦଦାୟକ, ମୋକ୍ଷଦ ବାସୁଦେବ ସୌଖ୍ୟପ୍ରଦ ନୁହନ୍ତି, (କାରଣ ମୋକ୍ଷାବସ୍ଥାରେ ସୁଖଦୁଃଖାନୁଭୂତି ହୁଏ ନାହିଁ) ।୮।

ପ୍ର-୨୮—(ଅନ୍ୱୟଃ) ହେ ପ୍ରିୟେ ! ସଦା ମନୋହରଂ ନିଷ୍କଳଙ୍କଂ ତେ ପୂର୍ଣ୍ଣତରଂ ମୁଖଚନ୍ଦ୍ରମଣ୍ଡଳଂ ବିଲୋକ୍ୟ, ସବ୍ରୀଡ଼ତୟା ପ୍ରତପ୍ତଃ ନିଶାପତିଃ ଜଳଧେଃ ଜଳାନ୍ତରଂ ଗତଃ । ୯ ।

ଅର୍ଥ—ହେ ପ୍ରିୟେ ! ସର୍ବଦା ମନୋହର ଓ କଳଙ୍କଶୂନ୍ୟ ତୁମ୍ଭର ପୂର୍ଣ୍ଣ ମୁଖ-ଚନ୍ଦ୍ରମଣ୍ଡଳକୁ ଦେଖି, ଲଜ୍ଜାବଶତଃ ସଂତପ୍ତ ଚନ୍ଦ୍ର, ସମୁଦ୍ରର ଜଳମଧ୍ୟରେ ନିମଜ୍ଜିତ ହେଲା, (ଅର୍ଥାତ୍ ଅସ୍ତ ହେଲା) ।୯।

ପ୍ର-୨। —(ଅନ୍ୱୟଃ) କେତକୀପରିମଳୋତ୍ଥିତଗନ୍ଧଲବ୍ଧଝଙ୍କୃତ୍ ଭ୍ରମଦ୍-ଭ୍ରମର ! ଯତ୍କଣ୍ଟକୈଃ ପରିବୃତାଂ ଅତୁଲାଂ ଅଗମ୍ୟାଂ ସଂରକ୍ଷିତାଂ, ଏତାଂ ବ୍ରଜସି, କଂ ଚିନ୍ତ୍ୟଂ ବାଞ୍ଛସି, ସମ୍ମୁଖାଂ ଲତାଂ ଗଚ୍ଛ । ୨ ।

ଅର୍ଥ—ହେ କେତକୀ ପୁଷ୍ପର ବିମର୍ଦ୍ଦଜନିତ ଗନ୍ଧର ଲୋଭୀ ହୋଇ ଗୁଞ୍ଜନ ସହିତ ବୁଲୁଥିବା ଭ୍ରମର ! ଯେହେତୁ କଣ୍ଟକ-ଦ୍ୱାରା ବେଷ୍ଟିତା, ଅତୁଲଶୋଭା, ଅଗମ୍ୟା ଓ ସୁରକ୍ଷିତା

ଏହା ପାଖକୁ ଯାଉଅଛୁ, କ'ଣ ? ରମଣ କରିବାକୁ (ଯଦି) ଇଚ୍ଛା କରୁଅଛ, ତେବେ ପୁଷ୍ପିତା ଅନ୍ୟ ଲତା ପାଖକୁ ଯାଅ । ୬ ।

ପୃ-୬୨—(ଅନ୍ୱୟଃ) ଯତ୍ର କେତକୀକୁସୁମସୌରଭଗନ୍ଧଲୁବ୍ଧଃ, ତଦର୍ପିତରସୋଦସ୍ଥଶୁକ୍ଲବୃତ୍ତିଃ ଭୃଙ୍ଗଃ କିଂ ଦୁର୍ଗମ ଏବ କଣ୍ଟକଂ ଭବନ୍ତି । ହେ ସୁଭ୍ରୁ ! କିଂ ବା ଜାନାସି ବରଂ କୁଞ୍ଜଲତାଂ ନ ତ ଇଚ୍ଛେତ୍ । ୭ ।

ଅର୍ଥ—ଯେ ହେତୁ କେତକୀପୁଷ୍ପର ଉତ୍ତମ-ଗନ୍ଧଲୋଭୀ ଓ କେତକୀପୁଷ୍ପର ରସରେ ସଂଲଗ୍ନଚିତ୍ତବୃତ୍ତି—ଭ୍ରମର କ'ଣ ଦୁର୍ଗମ ବୋଲି କଣ୍ଟକକୁ ମନେ କରେ ? ଅଥବା ଆପଣ ଜାଣନ୍ତୁ, ହେ ସୁଭ୍ରୁ ! ଉତ୍ତମ କୁଞ୍ଜଲତାକୁ ମଧ୍ୟ ସେ ଇଚ୍ଛା କରେନାହିଁ ।୭।

ପୃ-୬୯—(ଅନ୍ୱୟଃ) ବର୍ତ୍ତୁଳସ୍ଥୂଲସୁବର୍ଣ୍ଣକାନ୍ତଂ ଏତତ୍ ଶ୍ରୀଫଳସ୍ୱରୂପଂ ତ୍ୱତ୍ ରମ୍ୟସ୍ତନଂ ଦୃଷ୍ଟ୍ୱା, ଲଜ୍ଜାଭରଂ ଶ୍ରୀଫଳମାତୁଲଙ୍ଗଂ ବନେ ବୃକ୍ଷେ ଲମ୍ବିତଂ ଏବ । ୮ ।

ଅର୍ଥ—ବର୍ତ୍ତୁଳାକାର ସ୍ଥୂଳ ଓ ସ୍ୱର୍ଣ୍ଣକାନ୍ତିଯୁକ୍ତ ଏହି ଶ୍ରୀଫଳ-ସ୍ୱରୂପ ତୁମ୍ଭର ସୁନ୍ଦର ବେନି ସ୍ତନକୁ ଦେଖି ଲଜ୍ଜିତ ଭାବରେ ବେଲ୍ଵ ଓ ମାତୁଲଙ୍ଗ ବନମଧ୍ୟସ୍ଥ ବୃକ୍ଷରେ ଲମ୍ବିତ ହୋଇଛି ।୮।

ପୃ-୭୦—(ଅନ୍ୱୟଃ) ହେ କୋକିଳ ! ଅଖିଳ ଲତାସୁ ଫଳାନି ସନ୍ତି, କିନ୍ତୁ ତାନି ସଂତ୍ୟଜ୍ୟ, ଫଳଭୋକ୍ତୁକାମଃ (ତ୍ୱଂ) ସପୁଷ୍ପାଂ ଚୂତଲତାଂ ରମିତୁଂ ଇଚ୍ଛ କିଂ କାଙ୍କ୍ଷସି, ମେ ନୋ ବୁଧ୍ୱ, ଏଷା ନୃପତିସେବକଶ୍ରିତଃ । ୯ ।

ଅର୍ଥ—ହେ କୋକିଳ ! ସମସ୍ତ ଲତାରେ ଫଳ ବିଦ୍ୟମାନ, କାହିଁକି ତାକୁ ଛାଡ଼ି ଫଳଭୋଗ କାମନାଯୁକ୍ତ ତୁମ୍ଭେ, ପୁଷ୍ପିତ ଆମ୍ରଲତାରେ କ୍ରୀଡ଼ା କରିବାକୁ ଏଠାରେ ଇଚ୍ଛା କରୁଅଛ, ମୋ ପ୍ରତି ବୋଧ କର ନାହିଁ, ଏହା ରାଜସେବକର ଭୟ ।୯।

ପୃ-୫୦—(ଅନ୍ୱୟଃ) ଅନ୍ୟାନି ଜଲାନି ହିତ୍ୱା ଯତ୍ର ଘୃତକଃ ଧାରଜଳ-
ପ୍ରାପ୍ତ ମତିଂ କରୋତି, ତଥା ପିକଃ ରମ୍ୟାଣି ଚୂତଲତାଫଳାନି
ଦୃଷ୍ଟ୍ୱା ଅନ୍ୟ ଫଲାନି ନ ଚ ଇଚ୍ଛେତ୍ତୁ ।୧୦।

ଅର୍ଥ—ଅନ୍ୟ ସମସ୍ତ ଜଳ ଛାଡ଼ି ଯେ ଚାତକ ଘୃତର ଧାରଜଳ ପ୍ରାପ୍ତିରେ ବୁଦ୍ଧି କରେ, ସେହିପରି କୋକିଳ ସୁନ୍ଦର ଆମ୍ରଫଳକୁ ଦେଖି ଅନ୍ୟ ଫଳକୁ ଇଚ୍ଛା କରେ ନାହିଁ ।୧ ।

ପୃ-୫୧—(ଅନ୍ୱୟଃ) ହେ ବରାଙ୍ଗଣେ ! ପଦ୍ମିନି ! ପଦ୍ମଗନ୍ଧେ ! ପ୍ରମତ୍ତ-
ମାତଙ୍ଗଗତେ ! ଅନୁରକ୍ତେ ! ନୃପାତ୍ମଜେ ! ମନୋଜ୍ଞେ !
ମନୋଜବାଣବ୍ରଣଖିନ୍ନଗାତ୍ରଂ ମାଂ ଜୀବୟ । ୧୧ ।

ଅର୍ଥ—ହେ ବରାଙ୍ଗଣେ ! ପଦ୍ମିନି ! ପଦ୍ମଗନ୍ଧେ ! ଉନ୍ମତ୍ତଗଜ-ଗାମିନି ! ଅନୁରାଗିଣି ! ନୃପନନ୍ଦିନି ! ସୁନ୍ଦରି ! କନ୍ଦର୍ପଶରଜନିତ ବ୍ରଣଦ୍ୱାରା ଦୁଃଖିତଶରୀର ମତେ ଜୀବଦାନ କର । ୧୧ ।

ପୃ-୫୨—(ଅନ୍ୱୟଃ) ମୃଦାଦିପାତ୍ରେ ସଲିଲଂ ଯଥା ତୃଷାହରଂ ସ୍ୱାଦୁ
ସୁଶୀତଲଂ ଚ ସ୍ୟାତ୍, ସୁବର୍ଣ୍ଣରତ୍ନୈଃ ଅପି ନିର୍ମିତେ
ସୁପାତ୍ରେ ଗତଂ ଅମ୍ବୁ ତଥା କିଂ ନ ସ୍ୟାତ୍ତୁ । ୧୨ ।

ଅର୍ଥ—ମୃତ୍ତିକା ଆଦି ନିର୍ମିତ ପାତ୍ରରେ ସ୍ଥିତ ଜଳ ଯେପରି ତୃଷା-ନାଶକ, ସ୍ୱାଦୁ ଓ ସୁଶୀତଳ ହୁଏ, ସୁବର୍ଣ୍ଣ ଓ ରତ୍ନ ନିର୍ମିତ ସୁନ୍ଦର ପାତ୍ରସ୍ଥିତ ଜଳ କଣ ସେପରି ହୁଏ ନାହିଁ ? ।୧୨।

ପୃ-୫୧—(ଅନ୍ୱୟଃ) ସଦ୍ଧେମରତ୍ନଚୟନିର୍ମିତ-ଶୁଭ୍ରପାତ୍ରେ (ସ୍ଥିତଂ)
କର୍ପୂରବାସିତତରଂ ସୁରମ୍ୟଂ ଗାଙ୍ଗ ସୁନିର୍ମଲଜଲଂ ଯଥା
ପରମଂ ସୁଖଦଂ ସ୍ୟାତ୍ତୁ, ତଥା ବଧାନଂ କୌପଂ ପୟଃ କିମୁ
ଭବେତ୍ତୁ ତୁ । ୧୩ ।

ଅର୍ଥ—ବିଶୁଦ୍ଧ ସୁବର୍ଣ୍ଣ ଓ ରତ୍ନସମୂହଦ୍ୱାରା ନିର୍ମିତ ସୁନ୍ଦର ପାତ୍ରରେ (ସ୍ଥିତ) କର୍ପୂରସୁଗନ୍ଧିତ ଅତ୍ୟୁତ୍ତମ ଗଙ୍ଗାନଦୀର ନିର୍ମଳଜଳ ଯେପରି ପରମ ଆନନ୍ଦଦାୟକ ହୁଏ, ସେପରି କ'ଣ କୂପର ଜଳ ହୁଏ ତ ? (ଅର୍ଥାତ୍ ହୁଏ ନାହିଁ) । ୧୩ ।

ପୃ-୩୨—(ଅନ୍ୱୟଃ) ବଳାବସ୍ତ୍ରାବଦ୍ଧସୁଶୁଷ୍କମଧ୍ୟେ ! ବର୍ଷୌପଦ୍ଧାସ୍ତ୍ର ଔଷଧ-ମନ୍ତ୍ରରୂପେ ! ମନୋଭବାଶୌଘବଷାଭିଗାଙ୍ଗଂ ମାଂ ସମ୍ପ୍ରତି ଅନୁଗ୍ରହଂ କୁରୁ । ୧୪ ।

ଅର୍ଥ—ହେ ତ୍ରିବଳୀଯୁକ୍ତକ୍ଷୀଣକଟି ! (କନ୍ଦର୍ପ) ବିଷନାଶନର ଔଷଧ ଓ ମନ୍ତ୍ରରୂପିଣି ! କନ୍ଦର୍ପର ବାଣ-ସମୂହଜନିତ ବିଷଦ୍ୱାରା ପୀଡ଼ିତ-ଶରୀର, ମୋ ପ୍ରତି ବର୍ତ୍ତମାନ ଅନୁଗ୍ରହ କର । ୧୬ ।

ପୃ-୩୨—(ଅନ୍ୱୟଃ) କନ୍ଦର୍ପବାଣାବଶଚିତ୍ତବୃତ୍ତିଃ (ତ୍ୱଂ) ସ୍ୱଗତିଂ ଏବଂ (ବଚନଂ) କମର୍ଥଂ ବଦସି, ହେ କାମୁକ ! ଯଦି ମେ ପିତା ଜ୍ଞ ଏବଂ ଜ୍ଞାତବ୍ୟଂ ତ୍ୱଯ୍ୟା କଥଂ ଜୀବିତବ୍ୟଂ । ୧୪ ।

ଅର୍ଥ—କାମଶରଦ୍ୱାରା ଅବଶଚିତ୍ତବୃତ୍ତି ତୁମ୍ଭେ ଏହିପରି କାମ-ପୀଡ଼ିତ ବଚନକୁ କାହିଁକି କହୁଅଛ । ଯଦି ମୋର ପିତା ଏହା ଜାଣନ୍ତି, ତେବେ ହେ କାମୁକ ! ତୁମ୍ଭେ କିପରି ଜୀବନ ଧାରଣ କରିବ । ୧୫ ।

ପୃ-୩୪—(ଅନ୍ୱୟଃ) ସୀତାହରଣେ ସ ତ ରାମଃ ଦଶଭିଃ ବାଣୈଃ ଦଶାସ୍ୟଶିରାଂସି ଜଘାନ, ତ୍ୱଦଙ୍ଗସଙ୍ଗାୟ ମମ ଅନୁରକ୍ତଂ ଏକଂ ଏବ ମସ୍ତକଂ ମେ ପ୍ରଯ୍ୟାତୁ । ୧୬ ।

ଅର୍ଥ—ସୀତାଙ୍କ ହରଣରେ ସେହି ରାମ ଦଶଗୋଟି ଶରଦ୍ୱାରା ଦଶାନନର ଶିରସମୂହକୁ କାଟିଥିଲେ, ତୋର ଅଙ୍ଗପ୍ରାପ୍ତି ପାଇଁ ମୋର ଅନୁରକ୍ତ ଗୋଟିଏ ମାତ୍ର ମସ୍ତକ ନଷ୍ଟ ହେଉ । ୧୬ ।

ପୃ-୩୫—(ଅନ୍ୱୟଃ) ତ୍ୱଦ୍ରୂପଦର୍ଶନଂ ଆଶୁ ଦେହି, ମେ ଚକ୍ଷୁର୍ଦ୍ୱୟଂ ସଫଳଂ କୁରୁଷ୍ୱ, ଯେନ ନରୋତ୍ତମେନ ତପଃ କୃତଂ, ତେନ ତବ ଅଙ୍ଗସଙ୍ଗଃ ଲଭ୍ୟ ଏବ । ୧୭ ।

ଅର୍ଥ—ତୁମ୍ଭରୂପର ଅବଲୋକନକୁ ଶୀଘ୍ର ଦିଅ, ମୋର ନୟନ-ଦ୍ୱୟକୁ ସଫଳ କର, ଯେଉଁ ପୁରୁଷଶ୍ରେଷ୍ଠ ତପସ୍ୟା କରିଅଛି, ସେହି ତୁମ୍ଭର ଅଙ୍ଗଲାଭ ପ୍ରାପ୍ତି କରିବ । ୧୭ ।

ପୃ-୩୪—(ଅନ୍ୱୟଃ) ସର୍ବଶ୍ରମାଗରପଯ୍ୟୋତ୍ତମେନ ସମନ୍ୱିତେନ ଅପି ସୁଧୋପମେନ କୁଚିମ୍ବରକ୍ଷେତ୍ରକେନେନ ବିନା ଅପି, କିଂ ନନୁ ଦର୍ଶନେନ ସମ୍ପୂର୍ଣ୍ଣତେ । ୧୮ ।

ଅର୍ଥ—ଖଣ୍ଡ ଗୋଲମରିଚ ଓ ଉତ୍ତମ ଦୁଗ୍ଧଯୁକ୍ତ ହେଲେ ମଧ୍ୟ ଅମୃତ ସଦୃଶ (ଭୋଜ୍ୟବସ୍ତୁ) ଉଦର ପୂର୍ତ୍ତି ଭୋଜନ ବିନା କିଣ, କେବଳ ଦେଖିବାଦ୍ୱାରା (ଉଦର) ପୂର୍ଣ୍ଣ ହୁଏ । ୧୮ ।

ପୃ-୮୪—(ଅନ୍ୱୟଃ) ହେଦେବ ! ସୁଭ୍ରୁ ! କୃଶଶୀତଳକୋମଳାଙ୍ଗି ! ନାନାବିଭୂଷଣବିଭୂଷିତସୁଭଗାଙ୍ଗି ! ହୃଦ୍ୟେ ! ପ୍ରାଣପ୍ରଦେ ! ଆଜ୍ଞାଂ ବିଧେହି, ଅହଂ କିଂ କରବାଣି, ମେ ଅଭିଳାଷଂ ପରିପୂରୟ । ୧୯ ।

ଅର୍ଥ—ହେ ଦେବ ! ସୁଭ୍ରୁ ! କୃଶଶୀତଳକୋମଳାଙ୍ଗି ! ଅନେକଭୂଷଣଶୋଭିତସୁନ୍ଦରଗାଙ୍ଗି ! ମନୋରମେ ! ପ୍ରାଣଦାଙ୍ଗି ! ଆଜ୍ଞା କର, ମୁଁ କଣ କରିବି, ମୋର ଅଭିଳାଷକୁ ପରିପୂରଣ କର ।୧୯।

ପୃ-୮୪—(ଅନ୍ୱୟଃ) ବିଦ୍ୟାବିନୋଦରସିକେ ! ସୁରତୈକପାଙ୍ଗି ! ସର୍ବାଙ୍ଗସୁନ୍ଦରି ! ଧରାଶ୍ରପତେଃ ପ୍ରସୂତେ ! ସଦୟେ ! ଅଦ୍ୟ ଯଦି ମେ ତବ ଦୟା ଏବ ନ ଅସ୍ତି, (ତର୍ହି) ତ୍ୱତ୍ପ୍ରାପ୍ତୟେ ସୁରସରିତ୍ସୁ ତନୁଂ ତ୍ୟଜାମି । ୨୦ ।

ଅର୍ଥ—ହେ ବିଦ୍ୟାବିନୋଦରସିକେ ! ସୁରତୈକପାଙ୍ଗି ! ସର୍ବାଙ୍ଗସୁନ୍ଦରି ! ନୃପାତ୍ମଜେ ! ଦୟାଯୁକ୍ତେ ! ଆଜି ଯଦି ମୋ ଉପରେ ତୁମ୍ଭର ଦୟା ନାହିଁ, ତେବେ ତୁମ୍ଭର ପ୍ରାପ୍ତି ପାଇଁ ଗଙ୍ଗାରେ ଶରୀର ତ୍ୟାଗ କରିବି । ୨୦ ।

ପୃ-୮୫—(ଅନ୍ୱୟଃ) କାଳିନ୍ଦୀତଟସନ୍ନିଧୌ ଉପବନେ ସୁପୁଷ୍ପାନ୍ୱିତେ କଳ୍ପମହୀରୁହାଶ୍ରିତଲତାବାସେ ସ୍ଥିତ୍ୱା, ଗୋପାଙ୍ଗନାଲିଙ୍ଗନ-କ୍ରୀଡାକର୍ଷଣଚୁମ୍ବନାଦିଭୂଷିତଃ, ବେଣୁନା ସଂସ୍କୃତଃ ନାନାଭୂଷଣଭୂଷିତଃ, ବିହସିତଃ, କୃଷ୍ଣଃ ମାଂ (ପ୍ରତି) ପ୍ରସନ୍ନଃ ଅସ୍ତୁ । ୨୧ ।

ଅର୍ଥ—ଯମୁନାତଟନିକଟ ଉପବନସ୍ଥ ପୁଷ୍ପଯୁକ୍ତ କଳ୍ପବୃକ୍ଷାଶ୍ରିତ-ଲତାଗୃହରେ ରହି ଗୋପାଙ୍ଗନାସୁରତକ୍ରୀଡାଶୋଭିତ ବେଣୁଯୁକ୍ତ ଅନେକଭୂଷଣଭୂଷିତ ହାସଯୁକ୍ତ ଶ୍ରୀକୃଷ୍ଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।୨୧।

ପୃ-୮୭—(ଅନ୍ୱୟଃ) ଏଷ ବନୋଦବସୌଧଃ ଅନ୍ତଃପୁରଗୃହଃ ସୁରକ୍ଷକୈଃ ଇଙ୍ଗିତଜ୍ଞୈଶ୍ଚ ରକ୍ଷୈଃ ସଖୀଜନୈଃ ଚ ସୁଦୁର୍ଗମଃ, ହ ତେ ବାଞ୍ଛିତସିଦ୍ଧିଃ କଥଂ ଅସ୍ତୁ । ୧ ।

ଅର୍ଥ—ଏହି ବନୋଦବଭବନ ଅନ୍ତଃପୁରଗୃହ ଉତ୍ତମ ରକ୍ଷକଙ୍କଦ୍ୱାରା, ହୃଦ୍‌ଗତଭାବଗ୍ରାହୀ ସଖୀମାନଙ୍କଦ୍ୱାରା ମଧ୍ୟ ଅତ୍ୟନ୍ତ ଦୁଷ୍ପ୍ରବେଶ୍ୟ, ଏଣୁ ତୁମ୍ଭର ଅଭିଳଷିତ ସିଦ୍ଧି କପରି ହେବ ? । ୧ ।

ପୃ-୩୬—(ଅନ୍ୱୟଃ) ହେ ରାଜନନ୍ଦିନୀ ! ତ୍ୱୟି ପ୍ରସନ୍ନାୟାଂ ମମ ବାଞ୍ଛିତସ୍ୟ ସୁସିଦ୍ଧିଃ ଭବେତ୍ତୁ, ହେ ସୁକେଶି ! ଅଭୀଷ୍ଟଦା କଳ୍ପଲତା ଇବ ଅସି, କିଂ ତ୍ୱଂ ଚିନ୍ତାମଣିଃ ଏବ । ୨ ।

ଅର୍ଥ—ହେ ରାଜପୁତ୍ରି ! ତୁମ୍ଭେ ପ୍ରସନ୍ନ ହେଲେ ମୋ ମନୋରଥର ସୁସିଦ୍ଧି ହେବ । ହେ ସୁକେଶି ! ଅଭିଳଷିତ ଫଳଦାୟୀ କଳ୍ପଲତା ପରି ତୁମ୍ଭେ ଶୋଭିତ ହେଉଅଛ, କ'ଣ ତୁମେ ଚିନ୍ତାମଣି ? । ୨ ।

ପୃ-୩୭—(ଅନ୍ୱୟଃ) ହେ ମୃଦୁଳ-କନକ-କାନ୍ତେ ସ୍ନାନସୌରଭ୍ୟରମ୍ୟେ ତବ ବଦନକମଳମଧ୍ୟେ ନେତ୍ରମଣ୍ଡଳ୍ୟୈରେଫଂ ଇବ ସମୀକ୍ଷ୍ୟ, ବ୍ରୀଡ଼ୟା ପଦ୍ମବୃନ୍ଦଃ ସଜଳପୂର୍ଣ୍ଣେ ସରସି ମଗ୍ନୀକ୍ରାମଃ ପ୍ରବେଶଃ କିଂ । ୩ ।

ଅର୍ଥ—କୋମଳ କନକକାନ୍ତିଯୁକ୍ତ ସ୍ନାନଜନିତ ସୁଗନ୍ଧ ଓ ମନୋହର ତୁମ ମୁଖ-କମଳମଧ୍ୟରେ ନେତ୍ରରୂପକ ଭ୍ରମରଦ୍ୱୟ ଏଠାରେ ନିରୀକ୍ଷଣ କରି, ଲଜ୍ଜାବଶତଃ ପଦ୍ମସମୂହ ଜଳପୂର୍ଣ୍ଣ ସରୋବରରେ ମଗ୍ନ ଇଚ୍ଛାରେ ପ୍ରବେଶ କରିଅଛି କି ? । ୩ ।

ପୃ- ୮ —(ଅନ୍ୱୟଃ) ଜ୍ୟୋତ୍ସ୍ନା ଦିବ ଗଚ୍ଛତୁ, ପୁଂସଃ କର୍ମଫଳେନ ବାଞ୍ଛିତସ୍ୟ ସିଦ୍ଧିଃ ଭବେତ୍ତୁ, ହେ ଅଧୀର ! ଲବ୍ଧଃ (ସନ୍) ପୁନଃପୁନଃ ବାକ୍ୟଂ (ବଦସି), ବୁଭୁକ୍ଷିତଃ କିଂ ଦ୍ୱିକରେଣ ଭୁଙ୍କ୍ତେ । ୪ ।

ଅର୍ଥ—ଚନ୍ଦ୍ରାଲୋକ ନଷ୍ଟ ହେଉ, ପୁରୁଷର କର୍ମଫଳ ଅନୁସାରେ ଅଭିଳଷିତର ସିଦ୍ଧି ହୁଏ, ହେ ଅଧୀର ! ଲୁବ୍ଧ ହୋଇ ବାରମ୍ବାର ବାକ୍ୟ କଣ୍ଠା କହୁଛ, ବୁଦ୍ଧିମିତ ଜନ କ'ଣ ବୁଇହାତରେ ଖାଏ ? ।୮।

ପୃ-୩୮—(ଅନ୍ୱୟଃ) ହେ ପ୍ରାଣାଧିକେ ! ପ୍ରିୟତମେ ! ସମ୍ପ୍ରତି ତବ ରୂପ-
ରଜ୍ଜୁବଦ୍ଧଃ ଅସ୍ମି, ଭବନେ କଥଂ ବସାମି, ହେ ଗଜାସ୍ୱଜେ !
ସୁନ୍ଦରି ! (ମମ) ନର୍ମରୂପା ତ୍ୱଂ ଅସି, ତ୍ୱତ୍ପ୍ରୀତିରମ୍ୟସୁରତୈଃ
ମମ କାର୍ଯ୍ୟସିଦ୍ଧିଃ । ୫ ।

ଅର୍ଥ—ହେ ପ୍ରାଣାଧିକେ ! ପ୍ରିୟତମେ ! ବର୍ତ୍ତମାନ ତୁମ ରୂପ-ରଜ୍ଜୁରେ ମୁଁ ବନ୍ଧ, ଗୃହରେ କପରି ବାସ କରିବି, ହେ ଗଜପୁଚ୍ଛ ! ସୁନ୍ଦରି ! ତୁମେ ମୋର ନର୍ମସ୍ୱରୂପା, ତୁମ ପ୍ରୀତିଦ୍ୱାରା ରମ୍ୟ ସୁରତରେ ମୋର କାର୍ଯ୍ୟସିଦ୍ଧି ହେବ । ୫ ।

ପୃ-୩୯—(ଅନ୍ୱୟଃ) ହେ ଚନ୍ଦ୍ରାନନେ ! ବର୍ତ୍ତୁଳତୁଙ୍ଗତାଳରମ୍ୟସ୍ତନେ !
ସ୍ମେରସୁଧାବ୍ଜନେତ୍ରେ ! ବିଦ୍ୟାଧରୋଷ୍ଠେ ! ସୁବିଭୂଷଣେ !
ସ୍ଥୀରହୃଦ୍ବୃତେ ! ଭୋ ! ମୟି ତ୍ୱଂ ପ୍ରସୀଦ । ୬ ।

ଅର୍ଥ—ହେ ଚନ୍ଦ୍ରମୁଖି ! ଗୋଲାକାର ଉନ୍ନତ ତାଳସଦୃଶ ରମ୍ୟସ୍ତନେ ! ବିକସିତଅମୃତପଦ୍ମନେତ୍ରେ ! ବିମ୍ବାଧରୋଷ୍ଠେ ! ବୁଦ୍ଧିମତି ! ଅଳଙ୍କାରବୃତେ ! ଅୟି ! ମୋଠାରେ ତୁମେ ପ୍ରସନ୍ନ ହୁଅ ।୬।

ପୃ-୩୯—(ଅନ୍ୱୟଃ) କାମାଭିରାମ ! କାମାର୍ତ୍ତି ! ପ୍ରୀତିବଶମ୍ବଦଜନ !
ଅନ୍ୟରୂପଧୃକ୍ (ତ୍ୱଂ) ଯୁକ୍ତମାର୍ଗେ ସଖ୍ୟା ସାର୍ଦ୍ଧଂ
ସମାଗଚ୍ଛ । ୭ ।

ଅର୍ଥ—ହେ କନ୍ଦର୍ପ-ସୁନ୍ଦର ! ହେ କାମପୀଡ଼ିତ ! ହେ ପ୍ରେମର ବଶ୍ୟାସପାତ୍ର ! ଅନ୍ୟବେଶକୁ ଧାରଣ କରି ଉଚିତ ରାସ୍ତାରେ ସଖୀସହିତ ତୁମେ ଆସ । ୭ ।

ପୃ-୪୦—(ଅନ୍ୱୟଃ) ହେ ଦେବି ! ବାଳେ ! ଅଦ୍ୟ ମମ ପୁଣ୍ୟଦିବସେ
ଏବ, ଯତ୍ ତ୍ୱତ୍ ପାଦପଙ୍କଜଯୁଗଂ ଚ ବିଲୋକ୍ୟତେ, ମୁଗ୍ଧେ !
ସଦୟେ ! ରମ୍ୟାତିପୀନକଚ୍ଛନସ୍ତନସେବକଂ ମାଂ
ଅଧରସୀଧୁଲବ୍ଧଂ ବିଧେହି । ।

ଅର୍ଥ—ହେ ଦେବ ! ହେ ବାଳେ ! ଅଜି ମୋର ପୁଣ୍ୟ ଦବସରେ ତୁମ୍ଭ ପାଦପଦ୍ମ ଯୁଗଳକୁ ଦେଖୁଅଛୁ, ହେ ନୃପଧେ ! ସଦୟେ ! ସୁନ୍ଦର ଓ ଅତୁଳିତ ଇନ୍ଧନ ଓ ସ୍ତନର ସେବକ ମୋତେ ଅଧରମଧୁ-ଲେହ୍ୟ କର । ୮ ।

ପୃ-୪୧—(ଅନ୍ୱୟଃ) ଘୂଣାକ୍ଷରସ୍ୟ ଏବ ଏତତ୍ ବଧାନଂ, ନୃପତ୍ରେ ! ବଧାତ୍ରା ତ୍ୱଂ ବିନିର୍ମିତା, ବଧେଃ ତୁ ସୁକୌଶଳତ୍ୱଂ ଜାନାମି, ଯଦ ଇସ୍ୱଂ ସରୂପତା ଅନ୍ୟା ଦୃଶ୍ୟତେ । ୯ ।

ଅର୍ଥ—ହେ ନୃପନନ୍ଦନ ! ଘୂଣାକ୍ଷର ନ୍ୟାୟରେ ବଧାତା ତୁମକୁ ନିର୍ମାଣ କରିଅଛି । ବଧାତାର ଉତ୍ତମକୌଶଳ ମୁଁ ଜାଣିଛୁ, ଯଦ ଏହି ସାରୂପ୍ୟ ଅନ୍ୟଠାରେ ଦେଖାଯାଏ । ୯ ।

ପୃ-୪୧—(ଅନ୍ୱୟଃ) ହେ ମଦନସୁନ୍ଦର ! ଯଦର୍ଶନାତ୍ ପୂର୍ବଂ ତ୍ୱୟା ଏତତ୍ ଉକ୍ତଂ, ନନୁ ଚ ଏବ ଯତ୍ପ୍ରତି ଦୃଷ୍ଟଂ, ଶୀଘ୍ରଂ ସ୍ୱଭବନଂ ତ୍ୱରିତଂ ଗଚ୍ଛ, ପ୍ରାଣେଶ୍ୱରୀଂ ପଶ୍ୟ ଚ, ତବ ମନୋରଥସିଦ୍ଧିଃ ଅସ୍ତୁ । ୧୦ ।

ଅର୍ଥ—ହେ କାମାଭିରାମ ! ଦର୍ଶନ କରିବା ପୂର୍ବେ ତୁମେ ଏହା କହିଥିଲ, ବର୍ତ୍ତମାନ ତୁମ୍ଭେ ଦେଖିଲ, ଶୀଘ୍ର ତୁମ୍ଭେ ନିଜଗୃହକୁ ଗମନ କର । ପ୍ରାଣେଶ୍ୱରୀକୁ ମଧ୍ୟ ଦେଖ, ତୁମ୍ଭର ମନୋରଥ ସିଦ୍ଧ ହେଉ ।୧୦।

ପୃ-୪୨—(ଅନ୍ୱୟଃ) ହେ ଭୂପତିଜେ ! ତ୍ୱଂ ଏବ ମେ ନିବାସଃ, ଜୀବେଶ୍ୱରି ! ମେ ଅନ୍ୟା ନାସ୍ତି ତ୍ୱଂ ଏବ, ତେ ପ୍ରସନ୍ନତା ସକଳାର୍ଥସିଦ୍ଧିଃ, ମନୋଜସମ୍ମୋହନି ! ମାଂ ତ୍ୱଂ ଅବ । ୧୧ ।

ଅର୍ଥ—ହେ ନୃପନନ୍ଦନି ! ତୁମେ ମୋର ନିକେତନ, ହେ ଜୀବେଶ୍ୱରି ମୋର ଅନ୍ୟ କେହି ନାହିଁ, ତୁମ୍ଭେ ମାତ୍ର, ତୁମ୍ଭର ପ୍ରସନ୍ନତା, ସକଳ ପ୍ରୟୋଜନ-ସିଦ୍ଧିକାରଣୀ ହେ କାମ ମୋହିନି ! ତୁମ୍ଭେ ମୋତେ ରକ୍ଷା କର । ୧୧ ।

ପୃ-୪୩—(ଅନ୍ୱୟଃ) ହେ ଅତ୍ରୁରକ୍ତେ ! ତବ ନିଶିତକଟାକ୍ଷକ୍ଷିପ୍ତବାଣ-ବ୍ରଣାର୍ତ୍ତିଂ ମମ ତନ୍ତୁଂ ଔଷଧେନ ଜୀବୟସି, କଃ ଅପରଃ ବା

ସ୍ତନଜଘନବଲଗ୍ନାଲିଙ୍ଗନଂ ଗାଢଲେପଂ ତ୍ୱଦଧରମଧୁପାନଂ କ୍ଷେପୟେତ୍ ॥ ୧୨ ॥

ଅର୍ଥ—ହେ ଅନୁରାଗିଣି ! ତୋର ତୀକ୍ଷ୍ଣ କଟାକ୍ଷ ପ୍ରେରିତ ବାଣ-ବ୍ରଣଦ୍ୱାରା ପୀଡ଼ିତ ମୋର ଶରୀରକୁ ଔଷଧଦ୍ୱାରା ଆରୋଗ୍ୟ କରୁଅଛ । ଅନ୍ୟ ଦଣ୍ଡ ଅବା ଶରୀରର (ଚନ୍ଦନ) ଲେପ ତୁଲ୍ୟ ସ୍ତନଜଘନ-ସଲଗ୍ନ ଆଲିଙ୍ଗନକୁ ଓ ତୁମ୍ଭର ଅଧରସୁଧାପାନକୁ ଉପସ୍ଥାର କରିବ । ୧୨ ।

ପୃ-୪୩—(ଅନ୍ୱୟଃ) ମଦନାତୁରା ସମୁଦିତା ସଞ୍ଜାତଲଜ୍ଜାଭୟା ନୃପସୁତା କ୍ରୀଡାର୍ଥଂ କାନ୍ତଂ କେଳିନିକେତନଂ ନୀତ୍ୱା, ତୁ ଶୟ୍ୟୋପରି ଅଗୁରୁଚନ୍ଦନଂ ସଂସ୍ଥାପ୍ୟ, ସୁକୁସୁମଂ କର୍ପୂରପୂଗଂ ପୁରେ ଦତ୍ୱା, ସଖୀକରଂ ପୀଡ୍ୟ, ପ୍ରହସିତା, ତେନ (ନାୟକେନ ଚ) (ସଖ୍ୟଃ) ଦୂରୀକୃତାଃ । ୧୩ ।

ଅର୍ଥ—କାମପୀଡ଼ିତା, ଉତ୍କଣ୍ଠିତା, ଲଜ୍ଜା ଓ ଭୟଯୁକ୍ତା ନୃପନନ୍ଦନୀ କ୍ରୀଡାନିମିତ୍ତ କାନ୍ତଙ୍କୁ କେଳିଗୃହକୁ ନେଇ, ଶଯ୍ୟା ଉପରେ ଅଗୁରୁଚନ୍ଦନକୁ ରଖି, ଉତ୍ତମ ପୁଷ୍ପ ଓ କର୍ପୂରଯୁକ୍ତ ଗୁଆକୁ ସମ୍ମୁଖରେ ଦେଇ, ସଖୀ ହସ୍ତକୁ ପୀଡ଼ିତ କରି ହସିଥିଲା; ତଦନନ୍ତର ନାୟକ ସଖୀମାନଙ୍କୁ ଦୂରୀକୃତ କରିଥିଲେ । ୧୩ ।

ପୃ-୪୪—(ଅନ୍ୱୟଃ) ସ ବହିର୍ଗତାଂ ପ୍ରିୟସଖୀଂ (ଅତଃ) ସବ୍ରୀଡାଂ (ତାଂ) ଦୃଷ୍ଟ୍ୱା, ସ କାମାତୁରଃ ତନ୍ୱ୍ୟାଃ ପୀନଘନସ୍ତନୋରୁଜଘନାତ୍ ଚୀନାଂଶୁକଂ ଅପକୃଷ୍ୟ, ନୃପଦ୍ୱବଃ ଆଲିଙ୍ଗନଚୁମ୍ବନଂ କୃତ୍ୱା, ଅଧରଂ ପୀତ୍ୱା, ତାଡ଼ୟନ୍, ମର୍ଦ୍ଦନ୍, ଦନ୍ତନଖକ୍ଷତାନି, ତତଃ ନାଭ୍ୟାଃ କ୍ଷୋଭଂ ଚ କୁରୁତେ । ୧୪ ।

ଅର୍ଥ—ପ୍ରିୟସଖୀଗଣ ଅନ୍ତର ହେଲାରୁ ସଲଜ୍ଜା (ନାୟିକା)କୁ ଦେଖି କାମପୀଡ଼ିତ ସେହି (ନାୟକ) ତନ୍ୱଙ୍ଗୀର, ମାଂସଳ ଓ ସାନ୍ଦ୍ର ସ୍ତନ ଜଘନ ଓ ଉରୁ ପ୍ରଦେଶରୁ ସୂକ୍ଷ୍ମବସ୍ତ୍ରକୁ ଅପସାରଣ କରି, ସଜନନନ୍ଦନ ଆଲିଙ୍ଗନ ଓ ଚୁମ୍ବନ କରି, ଅଧର ପାନ କରି, ତାଡ଼ନ

ଓ ମର୍ଦ୍ଦନସୁଖଙ୍କ ଦନ୍ତନଖକ୍ଷତ, ତଦନନ୍ତର ନାଭିରେ ଶୋଭା ମଧ୍ୟ କଲେ । ୧୦ ।

ପୃ-୪୫—(ଅନ୍ୱୟଃ) ଜଘନସ୍ଥଳଂ ସ୍ତନଯୁଗଂ ଛାଦଏଁତୁ (ଅତଃ) ଲଜ୍ଜାଭରବ୍ୟାକୁଳା ସା ବାଲା କବରୀଶ୍ଳଥପୁଷ୍ପବଳସନ୍ଦୋଲାଦ୍ୱରତେ ଦୀପକେ (ସତି) ରଶ୍ମିଦ୍ରବ୍ୟସୁଦେହକଥା ଅୟଂ ଦୀପଃ ଅନ୍ୟତ୍ ଶ୍ରୁତିଂ ସମଭବତ୍, (ସ୍ୱକୀୟଂ) କାନ୍ତିଗୁଣାଧିକଂ ଦୃଷ୍ଟ୍ୱା ସ୍ମିତମୁଖୀ, ତତ୍ ତ୍ୟକ୍ତଲଜ୍ଜା ଅଭବତ୍ । ୧୫ ।

ଅର୍ଥ—(ବସ୍ତ୍ରରହିତ) ଜଘନ ଓ ସ୍ତନଯୁଗକୁ ଦେଖି, ଏଣୁ ଅଧିକ ଲଜ୍ଜାବଶତଃ ବ୍ୟାକୁଳତା, ସେହି ବାଳା ଦୀପ ପ୍ରତି କେଶଗୁଚ୍ଛସ୍ଥ ପୁଷ୍ପ-ଶୋଭିତମାଳାକୁ ଅର୍ପିତ କଲରୁ, ଶୋଭମାନରତ୍ନକାନ୍ତିଦ୍ୱାର ଏହି ଦୀପ ବହୁଶତ ରୂପରେ ଦେଦୀପ୍ୟମାନ ହେଲା, ତହିଁରେ ନିଜର କାନ୍ତିଗୁଣର ଆଧିକ୍ୟକୁ ଦେଖି, ସ୍ମିତମୁଖୀ ସେହି ବାଳା ତ୍ୟକ୍ତଲଜ୍ଜା ହୋଇଥିଲା । ୧୫ ।

ପୃ-୪୬—(ଅନ୍ୱୟଃ) ହେ ସୁମନୋହରଂ ମଧୁରାଳାପଂ ରଣତ୍କାରତଃ ସାନ୍ଦ୍ରଂ ଚଳତ୍ପାଦୟୋଃ ଅନମ୍ରଂ ଇଦଂ ନୂପୁରଦ୍ୱୟଂ ସଦ୍ଯୋଜ୍ୟଂ, ଅଶ୍ରିତଃ ମମ ସୁରତୋପଗ୍ରୀରକଥନଂ ପ୍ରୋଚ୍ୟତେ କରୋତି । ତ୍ୱଂ ପଶ୍ୟ, ତତ୍ ବିଶ୍ୱାସାତ୍ କୁ ବହୁସ୍ପୃହଂ ଫଳତି, କସ୍ୟ ଏବ ବିଶ୍ୱସ୍ୟତେ । ୧୬ ।

ଅର୍ଥ—ମନୋହର, ସୁଶବ୍ଦ, ରଣତ୍କାରବଶତଃ ସଘନ, ଚଞ୍ଚଳ ପାଦରେ ନମ୍ରୀଭୂତ ଏହି ନୂପୁରଯୁଗକୁ ଉଲ୍ଲାସରେ ଯୋଜନା କର, ଆଶ୍ରିତ ହୋଇ ମଧ୍ୟ ମୋର ସୁରତ ଉପଗ୍ରୀରକଥନକୁ ସ୍ପଷ୍ଟ କରୁଅଛି । ତୁମ୍ଭେ ଦେଖ, ତାକୁ ବିଶ୍ୱାସବଶତଃ ବହୁସାର କଲେ ମଧ୍ୟ ଧ୍ୱନିତ ହେଉଅଛି, କାହାଠାରେ ବିଶ୍ୱାସ କରାଯିବ । ୧୬ ।

ପୃ-୪୭— ଅନ୍ୱୟଃ) ସୁଭଗେ ! ଅତିଲୋଲେ ! ଅଦ୍ୟ ଏତତ୍ ବପଶ୍ରିତଂ ଶୃଙ୍ଗାରଂ ସମାଗୃହନ୍ତ୍ୟାଃ ତେ ଗଣ୍ଡସ୍ଥଳଂ କୁଣ୍ଡଳ-ଛଦ୍ମରୂପଃ ସକାମୀ ଶଶୀ ଚୁମ୍ବତି, ମନ୍ୟେ । ୧୭ ।

ଅର୍ଥ—ହେ ସୁଭଗେ ! ହେ ଅତି ଚପଳେ ! ଏଠାରେ ଏହି ବିପରୀତ ରତିକୁ କରୁଥିବା ତୋର ଗଣ୍ଡଦେଶକୁ କୁଣ୍ଡଳ ବ୍ୟାଜରେ ସେହି କାମୀ ଚନ୍ଦ୍ର ବୋଧେ ଚୁମ୍ବନ କରୁଛି ? । ୧୭ ।

ଶ୍ଳୋ-୧୮—(ଅନ୍ୱୟଃ) ପ୍ରିୟେ ! ତେ ଅଦ୍ୟ ଉତ୍ତୁଙ୍ଗସ୍ତନଯୁଗ୍ମପୀଡ଼ିତ-
ଦୃଢ଼ାଶ୍ଳେଷଣ ଦନ୍ତାଘାତନଖକ୍ଷତୈଃ, ସୁମଧୁରାଳାପୈଃ,
ସୁଚୁମ୍ବିତୈଃ ଚୁମ୍ବନୈଃ ଚ, ନାନାବନ୍ଧବିନୋଦତଃ ଅପି, ଏତତ୍
କୃତେ ମେ ଗାତ୍ରଂ ସାର୍ଥକଂ କୁରୁଷେ, ହେ ! ପୁରୁଷାୟିତେନ
କନ୍ଦର୍ପବାଣବ୍ୟଥାଂ (ମେ) ହର । ୧୮ ।

ଅର୍ଥ—ହେ ପ୍ରିୟେ ! ତୋର ଅତି ଉନ୍ନତ ସ୍ତନଯୁଗ୍ମର ଦୃଢ଼ାଲିଙ୍ଗନଦ୍ୱାରା, ଦନ୍ତ ଓ ନଖକ୍ଷତଦ୍ୱାରା, ମଧୁରବଚନଦ୍ୱାରା, ସୁନ୍ଦର ଚୁମ୍ବନ ଦ୍ୱାରା ମଧ୍ୟ, ନାନା ବନ୍ଧଦ୍ୱାରା ମୁଁ ବିନୋଦିତ, ଅତଃ ମୋର ଶରୀରକୁ ସାର୍ଥକ କରୁଛୁ । ଅହେ ! ପୁରୁଷାୟିତ ରତିଦ୍ୱାରା ମୋର କନ୍ଦର୍ପବାଣବାଧାକୁ ଦୂର କର । ୧୮ ।

ଶ୍ଳୋ-୧୯—(ଅନ୍ୱୟଃ) ପ୍ରିୟେ ! ମୁଖରଂ କାର୍ଯ୍ୟଂ ଚଂ କର୍କଶଂ କାଃଶବ୍ଦଂ
ଏତତ୍ ନୂପୁରଯୁଗଂ ମେ କୃତେ ଯଦ୍ ବ୍ୟକ୍ତଂ ଭବତି,
ଗୁଣବତୀ ସୁପ୍ରୀତିକାରିଣୀ ଅପି ଗୋପ୍ୟସ୍ଥା କଟିମେଖଳା
ଅଣ୍ଡିତାନ୍ ମଧ୍ୟସ୍ଥାନ୍ ମଧୁରସ୍ୱନୈଃ ବାଞ୍ଛାପୟତି ।୧୯।

ଅର୍ଥ—ହେ ପ୍ରିୟେ ! ମୁଖର ଗୁଣରହିତ କଠୋର ଓ ଶବ୍ଦରହିତ ଏହି ନୂପୁରଯୁଗ ମୋପାଇଁ ଯେଉଁ ସ୍ଫୁଟ ହେଉଅଛି । ଗୁଣଯୁକ୍ତା ଆନନ୍ଦ-ଦାୟିନୀ ଓ ଗୋପ୍ୟସ୍ଥାନସ୍ଥିତା କଟୀର ମେଖଳା ଅଣ୍ଡିତ ମଧ୍ୟସ୍ଥମାନଙ୍କୁ ମଧୁର ଧ୍ୱନିଦ୍ୱାରା ଜଣାଉଅଛି ।୧୯।

ଶ୍ଳୋ-୪୮—(ଅନ୍ୱୟଃ) ହେ କୁଚଶଳିନେ ! ଅଦ୍ୟ ଯତ୍ ଅଧରାତ୍ ଅମୃତଂ
ସ୍ୱାଦିତଂ ତତ୍‌ବକ୍ତ୍ରଂ, ଯାଭ୍ୟାଂ ତେ ନିଶ୍ଚଳରହିତଂ ସର୍ବାଙ୍ଗଂ
ଅବେକ୍ଷ୍ୟତେ (ତେ) ନୟନେ, ତୌ ଜଘନସ୍ଥଳଂ ସ୍ତନଯୁଗଂ
ସଂସେବ୍ୟମାନୌ ଚ ତୌ ହସ୍ତୌ, ଯତ୍ ତପସାର୍ଜିତଂ
ରତିସୁଖଂ ପ୍ରାପ୍ତାଙ୍ଗସଙ୍ଗଂ ଚ ତତ୍ ଗାତ୍ରମ୍ । ୨ ।

ଅର୍ଥ—ହେ ସୁନ୍ଦରମୂର୍ତ୍ତି ! ଯେଉଁ ମୁଖ ଆଜ (ତୁମ) ଅଧରରୁ ଅମୃତ ଆସ୍ୱାଦନ କରୁଛ ସେହି ମୁଖ ଧନ୍ୟ, ଯେଉଁ ନୟନଦ୍ୱନ୍ଦ୍ୱ ତୁମର ବସ୍ତ୍ରରହିତ ସର୍ବାଙ୍ଗକୁ ଅବଲୋକନ କରୁଅଛ ସେହି ନୟନଯୁଗ୍ମ ଧନ୍ୟ, ଯେଉଁ ହସ୍ତଯୁଗ୍ମ ଜଘନସ୍ଥଳ ଓ ସ୍ତନଯୁଗ୍ମର ସେବା କରୁଅଛ ସେହି ହସ୍ତଯୁଗ୍ମ ଧନ୍ୟ, ଯେଉଁ ଶରୀର ତପସ୍ୟାଦ୍ୱାରା ଲବ୍ଧ ରତିସୁଖ ଓ ଅଙ୍ଗସଙ୍ଗକୁ ପ୍ରାପ୍ତ କରିଅଛ ସେହି ଶରୀର ଧନ୍ୟ ।୨୦।

ପୃ-୪୮—(ଅନ୍ୱୟଃ) ତ୍ୱଦ୍‌ବିବ୍ୟପୀନସ୍ତନଯୁଗ୍ମଂ ଆସ୍ୟଂ, ତ୍ୱଚାରୁରମ୍ୟଂ ଜଘନସ୍ଥଳ ଚ, ତ୍ୱତ୍‌ ପୀବରଂ ରମ୍ୟନିତମ୍ବବିମ୍ବଂ ଅତ୍ର ଲୋକେ ଧନ୍ୟଃ କଥଂ କ୍ରୀଣିତ ।୨୧।

ଅର୍ଥ—ତୁମର ସୁନ୍ଦର ଓ ପୃଥୁଳ ସ୍ତନଯୁଗ୍ମ, ମୁଖ, ତୁମର ଅତିରମ୍ୟ ଜଘନସ୍ଥଳ ଓ ତୁମର ସୁନ୍ଦରନିତମ୍ବବିମ୍ବକୁ ଏହି ସଂସାରରେ ପୁଣ୍ୟବାନ୍ ଜନ କିପରି ଲଭିବ ।୨୧।

ପୃ-୪୯—(ଅନ୍ୱୟଃ) ନିଶାବଶେଷଃ, ତବ ରମଣାଭିଳାଷଃ ସିଦ୍ଧଃ ଅସୀତ୍‌, ଅତଃ ପରଂ ତୁ କିଂ, ଯଥା କଶ୍ଚିତ୍‌ ଜନଃ ଅପି ନ ଜାନାତି, ତଥା ତ୍ୱଂ ଯାହି, ପୁନଃ ଏହି ।୨୨।

ଅର୍ଥ—ରାତ୍ରିର ଅବସାନ ହେଲା, ତୁମର ରମଣ ଇଚ୍ଛା ପୂର୍ଣ୍ଣ ହେଲା, ଆଉ କ'ଣ ?, ଯେପରି କୌଣସି ଲୋକ ମଧ୍ୟ ନ ଜାଣେ, ସେପରି ତୁମେ ଯାଅ ଓ ପୁଣି ଆସ ।୨୨।

ପୃ-୪୯—(ଅନ୍ୱୟଃ) ହେ ଦେବ ! ତବ ଏଷ ଅନୁଗ୍ରହଃ ମେ ଅସ୍ତୁ, ତ୍ୱଦଙ୍ଗସଙ୍ଗାତ୍‌ ହି ଜନ୍ମ ସଫଳଂ, ନବପ୍ରିୟାୟାଃ ବରହାସିଲନମନୋବ୍ୟଥାଭେଦନଂ କିଂ ଅନ୍ୟତ୍‌ ଅସ୍ତି ।୨୩।

ଅର୍ଥ—ହେ ଦେବ ! ତୁମର ଏହି ଅନୁଗ୍ରହ ମୋ ପ୍ରତି ହେଉ, ତୁମର ଅଙ୍ଗଲାଭରୁ ମୋର ଜନ୍ମ ସଫଳ ହେଲା, ନବୀନ ପ୍ରିୟାର ବିରହଜାତ୍‌ ଗଭୀର ମନୋବ୍ୟଥାର ଭିନ୍ନ କ'ଣ ଅନ୍ୟ ଅଛି ।୨୩।

ପୃ-୫୦—(ଅନ୍ୱୟଃ) ସ୍ନାନଂ ନ, ନ ଚ ଭୋଜନଂ, ପଠନଂ ନ, ପ୍ରିୟେ ଅନ୍ୟତ୍ ସୌଖ୍ୟଂ ନ, ଅନ୍ୟସ୍ତ୍ରୀଜନସେବନଂ ନ, ନ ଚ କଥା, ମମ ନିଦ୍ରା ଅପି ନ ଅସ୍ତି, କିନ୍ତୁ ଧ୍ୟାନେନ ଚେତଃ-ସ୍ଥିତାଂ ତ୍ୱାଂ ସତତଂ ପରିଚିନ୍ତୟାମି, କାନ୍ତେ ! ତବ ସ୍ୱପ୍ନାଲୋକନକାମକେଳିବର୍ଦ୍ଧନା ଜୀବାମି ।୨୪।

ଅର୍ଥ—ସ୍ନାନ ନାହିଁ, ଭୋଜନ ନାହିଁ, ପଠନ ମଧ୍ୟ ନାହିଁ, ହେ ପ୍ରିୟେ ! ଅନ୍ୟକି ସୁଖ ମଧ୍ୟ ନାହିଁ, ଅନ୍ୟ ସ୍ତ୍ରୀଲୋକ ସେବା ନାହିଁ, କଥା ନାହିଁ ଓ ମୋର ନିଦ୍ରା ମଧ୍ୟ ନାହିଁ, କିନ୍ତୁ ଧ୍ୟାନବଶତଃ ଚିତ୍ତସ୍ଥିତ ତୁମ୍ଭକୁ ସର୍ବଦା ଚିନ୍ତନ କରୁଅଛି, ହେ କାନ୍ତେ ! ତୁମ୍ଭର ସ୍ୱପ୍ନଦୃଷ୍ଟ-କାମକ୍ରୀଡାବର୍ଦ୍ଧରେ ମୁଁ ଜୀବନଧାରଣ କରୁଛି ।୨୪।

ପୃ-୫୧—(ଅନ୍ୱୟଃ) ତବ ବିଚ୍ଛେଦତଃ ମେ ରାତ୍ରିଃ କାଳଯୁଗୋପମା, ମଳୟଜଃ ଗନ୍ଧାନିଳଃ କିଂ ବିଷଂ, ସୋମଃ ସୂର୍ଯ୍ୟ ଇବ ଅଭବତ୍, ମଳୟଜାଲେପଃ ସ୍ଫୁଲିଙ୍ଗୋପମଃ, ଉକ୍ତଃ ସୁସ୍ୱର-ବାଦ୍ୟଗୀତପରଭୃତ୍ପାରାବତାଦିଧ୍ୱନିଃ କର୍ଣ୍ଣଯୁଗଳେ ବଜ୍ରସ୍ୟ ଅହତିଃ ଏବ ।୨୫।

ଅର୍ଥ—ତୋ ବିରହରେ ମୋପାଇଁ ରାତ୍ରି କାଳଯୁଗ ସଦୃଶ, ମଳୟ ପର୍ବତର ସୁଗନ୍ଧପବନ ଯେପରିକି ବିଷ, ଚନ୍ଦ୍ର ମଧ୍ୟ ସୂର୍ଯ୍ୟ ସଦୃଶ ହୋଇଥିଲେ, ଚନ୍ଦନଲେପ ଅଗ୍ନିକଣ ସଦୃଶ, ଉଚ୍ଚାରିତ ସୁମଧୁର ବାଦ୍ୟଗୀତ ଓ କୋକିଳପାରାବତାଦିର ଶବ୍ଦ କର୍ଣ୍ଣରେ ବଜ୍ରତାଡନ ସମ ପ୍ରତୀତ ହୁଏ ।୨୫।

ପୃ-୫୨—(ଅନ୍ୱୟଃ) ତବ ବିଚ୍ଛେଦାତ୍ ମେ ଚନ୍ଦ୍ରଃ ଦ୍ୱାଦଶାର୍କସ୍ତରଃ ସମଭବତ୍, ରାତ୍ରିଃ ଯୁଗାନାଂ ଶତଂ, ମିଷ୍ଟଂ ବିଲେପନଂ ଉଲ୍କରସଂ, ଅହୋ ମଳୟାନିଳଃ ଦୀପ୍ତାନଳଃ, ଗୀତାଦିଧ୍ୱନିଃ ଏବ ବଜ୍ରସଦୃଶଃ, ଶ୍ରୁତୌ କିଂ କାଳକୂଟଃ, ବିଚିତ୍ରଂ ଗୃହଂ ଅରଣ୍ୟମ୍ ।୨୬।

**ଅର୍ଥ**—ତୁମ ବିରହରେ ମୋପାଇଁ ଚନ୍ଦ୍ର ଦ୍ୱାଦଶସୂର୍ଯ୍ୟ ହେଲେ, ଗନ୍ଧ ଯୁଗଶତ ହେଲା, ଅଙ୍ଗସ୍ପର୍ଶ ଲେପନ ମଧ୍ୟ ଚିତ୍ରରସ ହେଲା, ଅଧିକନ୍ତୁ ମଳୟାନିଳ ଛଗିଭ୍ରାଗ୍ନି ତୁଲ୍ୟ, ଗୀତାଦଧ୍ୱନି ମଧ୍ୟ ବଜ୍ରସଦୃଶ, ଓ ଶ୍ରବଣେନ୍ଦ୍ରିୟରେ କଷ୍ଟ, ସୁନ୍ଦର ଗୃହ ଅରଣ୍ୟ ହେଲା ।୨୬।

ପୃ-୫୨—(ଅନ୍ୱୟଃ) ହେ ମାନିନି ! ଦେବି ! ଦୟିତେ ! ମିଥ୍ୟାବଚଃ ଶ୍ରୂୟତେ, ମାନଂ ମୁଞ୍ଚ, ଯଦି ବଚଃ ତ୍ୱୟା ସତ୍ୟଂ ମନ୍ୟତେ, (ତର୍ହି) ନିଜସେବକେ କିଂ କୋପଃ, ମମ ଦୋଷ ହେତୁ ଦୋର୍ଭ୍ୟାଂ ଆଶୁ ବନ୍ଧନଂ, ଦନ୍ତଦଲନଂ, ପୀନସ୍ତନାସ୍ଫାଳନଂ, ତେ କଟାକ୍ଷବଣିଶୈଃ ଶସ୍ତ୍ରୈଃ ପ୍ରହାରଂ କୁରୁ । ୨୭ ।

**ଅର୍ଥ**—ହେ ମାନିନି ! ଦେବି ! ପ୍ରିୟେ ! ମିଥ୍ୟାବଚନକୁ ତୁମ୍ଭେ ଶୁଣୁଅଛ, ମାନକୁ ତ୍ୟଜ, ଯଦି ବଚନକୁ ତୁମ୍ଭେ ସତ୍ୟ ବୋଲି ସ୍ୱୀକାର କରୁଅଛ, ତେବେ ନିଜ ସେବକ ବିଷୟରେ ରାଗ କାହିଁକି, ମୋର ଯଦି ଦୋଷ, ତେବେ ଶୀଘ୍ର ବାହୁଦ୍ୱାରା ବନ୍ଧନ, ଦନ୍ତରେ ଦଶନ, ପୀନସ୍ତନ-ଦ୍ୱାରା ତାଡ଼ନ, ତୁମ୍ଭର କଟାକ୍ଷବାଣରୂପକ ଶସ୍ତ୍ରଦ୍ୱାରା ପ୍ରହାର କର ।୨୭।

ପୃ-୫୩—(ଅନ୍ୱୟଃ) ଅତ୍ୟୁଚ୍ଚେ ସୁରମ୍ୟେ ହର୍ମ୍ମ୍ୟେ ପରମପ୍ରିୟାଭିଃ ସଖୀଭିଃ ଯୁକ୍ତା ସା ନାନାକଥାକୌତୁକକେଳିଭିଃ ତେନ ସାର୍ଦ୍ଧଂ ଏବ ତୁ ନିତ୍ୟଂ ରମତେ ।୨୮।

**ଅର୍ଥ**—ଅତ୍ୟନ୍ତ ଉଚ୍ଚ ସୁନ୍ଦର ଭବନରେ ପରମପ୍ରିୟା ସଖୀଯୁକ୍ତା ସେହି ରାଜାକନ୍ୟା ନାନାକଥାକୌତୁକକ୍ରୀଡ଼ାଦ୍ୱାରା ତାହା ସହିତ ନିତ୍ୟ କ୍ରୀଡ଼ା କଲେ । ୨୮ ।

ପୃ-୫୪—(ଅନ୍ୱୟଃ) କାମାର୍ତ୍ତିଃ ନବଯୌବନଃ କବିବରଃ ନାନାବନ୍ଧ-ବନୋଦନର୍ତ୍ତରତକ୍ରୀଡ଼ାରସୈଃ ଅନ୍ୱିତଃ, ନୃପାଳପୁତ୍ର୍ୟା ସମଂ ସ୍ଥିତ୍ୱା, ଅନ୍ତଃପୁରେତଃ ବହୁଃ ବଳସ୍ଥିତଃ ଚୌରଃ, ରଜନୟୋଦ୍ଧତୈଃ ସୁପୁରୁଷୈଃ ଉପାୟଜ୍ଞମୈଃ ଗୃହୈଃ ରାଜାଗ୍ରତଃ ନୀୟତେ ।୨୯।

ଅର୍ଥ—କାମପୀଡ଼ିତ, ଯୁବକ, କବିଶ୍ରେଷ୍ଠ, ନାନାବନ୍ଧବନ୍ଦୋଦ-ପୂର୍ଣ୍ଣ ରତିକ୍ରୀଡ଼ାରସଯୁକ୍ତ, ରାଜପୁତ୍ରୀ ସହ ରହି, ଅନ୍ତଃପୁରରୁ ବାହାରେ ବୁଲୁଥିବା ସେହି ଚୋର (ନାୟକ)କୁ ଦେଖି ରାଜନୀଯୁକ୍ତ ପୁରୁଷଶ୍ରେଷ୍ଠ ଉପାୟ-ଚତୁର ଗୁରମାନେ ରାଜାଙ୍କ ଆଗକୁ ନେଲେ ।୨୯।

ପୃ-୫୫—(ଅନ୍ୱୟଃ) ତାନ୍ ଅପି ସେବକାନ୍ ରାଜା କ୍ରୁଧା ବହୁବିଧଂ ହୁଂକାରପୂର୍ବଂ ଚୌରଂ ଝଟିତି ଛିନ୍ଧି, ଇତିବଚନଂ ଉବାଚ, ଖଡ୍‌ଗଂ ସମାଦାୟତେ, ରାଜାଜ୍ଞା ସାହସାତ୍ ଭବନାତ୍ ବହିର୍ବିଳସିତଂ ତଂ ନୀତ୍ୱା, ଇଷ୍ଟଂ ଦେବତାଂ ସଂସ୍ମର ଇତି ବଚଃ ଉଚ୍ୟତଃ, ସ ଚୌରଃ ଅବଦତ୍ । ୦।

ଅର୍ଥ—ସେହି ସେବକମାନଙ୍କୁ ମଧ୍ୟ ରାଜା କ୍ରୋଧରେ ନାନାପ୍ରକାର ହୁଁକାରପୂର୍ବକ 'ଚୋରକୁ ଶୀଘ୍ର ଛେଦନ କର', ଏପରି ବଚନ କହିଥିଲେ । ଖଡ୍‌ଗକୁ ଦେଲେ, ରାଜନନ୍ଦିନୀ ସାହସରେ ଗୃହ ବାହାରେ ବୁଲୁଥିବା ତାକୁ (ନାୟକକୁ) ନେଇ, ଇଷ୍ଟଦେବତାକୁ ସ୍ମରଣ କର, ଏପରି ବଚନ କହିଥିଲେ, (ତାପରେ) ସେ (ନାୟକ) କହିଥିଲେ ।୫୦।

ପୃ-୫୬—(ଅନ୍ୱୟଃ) ଅଦ୍ୟ ଅପି କନକଚମ୍ପକଦାମଗୌରାଂ, ଫୁଂଲ୍ଲାରବିନ୍ଦବଦନାଂ, ତନୁରୋମରାଜୀଂ, ସୁପ୍ତୋତ୍ଥିତାଂ, ମଦନବିହ୍ୱଳଲାଳସାଙ୍ଗୀଂ ତାଂ ପ୍ରମାଦଗଳିତାଂ ବିଦ୍ୟାଂ ଇବ ଚିନ୍ତୟାମି । ୧ ।

ଅର୍ଥ—ଏବେ ମଧ୍ୟ ସ୍ୱର୍ଣ୍ଣିଲଚମ୍ପକମାଳାସଦୃଶ ଗୌରବର୍ଣ୍ଣା, ବିକଶିତ ପଦ୍ମମୁଖୀ, ସୂକ୍ଷ୍ମରୋମପଂକ୍ତିଯୁକ୍ତା, ଶୟନ କରି ଉଠୁଥିବା କାମ-ବିହ୍ୱଳବଶତଃ ଉଚ୍ଛିଣ୍ଣିତଅଙ୍ଗଯୁକ୍ତା, ତାକୁ ଅନବଧାନତା ବଶତଃ ଭୁଲି ଯାଇଥିବା ବିଦ୍ୟା ପରି ଚିନ୍ତା କରୁଅଛି । ୧ ।

ପୃ-୫୭—(ଅନ୍ୱୟଃ) ଅଦ୍ୟ ଅପି ଶଶିମୁଖୀଂ ନବଯୌବନାଢ୍ୟାଂ ପୀନସ୍ତନୀଂ ଗୌରକାନ୍ତିଂ ମନ୍ମଥଶରାନଳପୀଡ଼ିତାଙ୍ଗୀଂ ତାଂ ଯଦି ପୁନଃ ପଶ୍ୟାମି, (ତର୍ହି) ସମ୍ଭୃତ ଗାତ୍ରାଣି ସୁଶୀତଳାନି କରୋମି । ୨ ।

ଅର୍ଥ—ଏବେ ମଧ୍ୟ ଚନ୍ଦ୍ରମୁଖୀ, ପୂର୍ଣ୍ଣନବଯୌବନା, ଛୁଙ୍ଗସ୍ତନୀ, ଗୌରକାନ୍ତି, କାମବାଣଦ୍ୱାରା ପୀଡ଼ିତାଙ୍ଗୀ, ତାକୁ ଯଦି ପୁନଃ ଦେଖିବି, ତେବେ ଶରୀରକୁ ସୁଶୀତଳ କରିବି । ୨ ।

ଶ୍ଳୋ-୩—(ଅନ୍ୱୟଃ) ଅଦ୍ୟ ଅପି କମଳସ୍ୱଲୋଚନାକ୍ଷୀଂ, ପୀବରପୟୋଧରଭାରଖିନ୍ନାଂ ତାଂ ଯଦି ପୁନଃ ପଶ୍ୟାମି, ବାହୁଯୁଗଳେନ ସଂପୀଡ୍ୟ ଉନ୍ମତ୍ତବତ୍ ଇଷ୍ଟଂ ବକ୍ତ୍ରଂ ପିବାମି, ଯଥା ମଧୁକରଃ କମଲଂ । ୩ ।

ଅର୍ଥ—ଏବେ ମଧ୍ୟ, କମଳ ସଦୃଶ ବିସ୍ତୃତନେତ୍ରୀ, ପୃଥୁଳସ୍ତନଭାରପୀଡ଼ିତା, ତାକୁ ଯଦି ପୁନଃ ଦେଖିବି, ତେବେ ଉଭୟ ବାହୁଦ୍ୱାରା ଗାଢ଼ାଲିଙ୍ଗନ କରି, ଉନ୍ମତ୍ତପରି ଅଭିଳଷିତ ମୁଖକୁ ପାନ କରିବି, ଯେପରି ଭ୍ରମର କମଳପାନ କରେ । ୩ ।

ଶ୍ଳୋ-୪—(ଅନ୍ୱୟଃ) ଅଦ୍ୟ ଅପି ନିଧୁବନକ୍ଲମନିଃସହାଙ୍ଗୀଂ, ଅପାଣ୍ଡୁଗଣ୍ଡପତିତାଳକକୁନ୍ତଳାଂ, ପ୍ରଚ୍ଛନ୍ନପାପକୃତମନ୍ଥରଂ ଅବହନ୍ତୀଂ, କଣ୍ଠାବସକ୍ତମୃଦୁବାହୁଲତାଂ ତାଂ ସ୍ମରାମି । ୪ ।

ଅର୍ଥ—ଏବେ ମଧ୍ୟ ରତିଶ୍ରମଜନିତକ୍ଳାନ୍ତାଙ୍ଗୀ, ପାଣ୍ଡୁରକପୋଳପତିତଚୂର୍ଣ୍ଣକୁନ୍ତଳା, ଗୁପ୍ତପ୍ରଣୟପାପଜନିତଶୈଥିଲ୍ୟଯୁକ୍ତା, କଣ୍ଠସଂଲଗ୍ନ କୋମଳ ବାହୁଲତା, ତାକୁ ସ୍ମରଣ କରୁଅଛି ।୪।

ଶ୍ଳୋ-୫—(ଅନ୍ୱୟଃ) ଅଦ୍ୟ ଅପି ଅସ୍ୱତାକ୍ଷୀଂ,ଶୃଙ୍ଗାରସାରକମଳାକରରାଜହଂସୀଂ, ବ୍ରୀଡ଼ାବନମ୍ରବଦନାଂ, ଉଷସି ସୁରତଜାଗରଘୂର୍ଣ୍ଣମାନଶୟ୍ୟାଗ୍ରବଲିତରଲତାରକାଂ, ତାଂ ସ୍ମରାମି ।୫।

ଅର୍ଥ—ଏବେ ମଧ୍ୟ ବିଶାଳନେତ୍ରୀ ଉତ୍କୃଷ୍ଟଶୃଙ୍ଗାରସରୋବରର ରାଜହଂସୀ, ଲଜ୍ଜାବନତମୁଖୀ, ପ୍ରାତଃ କାଳରେ ରତିକ୍ରୀଡ଼ା ଜାଗରଣବଶତଃ ଘୂର୍ଣ୍ଣିତ ଓ ବକ୍ରସ୍ୱରରେ ଗତିଶୀଳ ଚଞ୍ଚଳକନୀନିକାଯୁକ୍ତା ତାକୁ ସ୍ମରଣ କରୁଅଛି । ୫ ।

ପ୍-୫୯—(ଅନ୍ୱୟଃ) ଅଦ୍ୟ ଅପି ଶ୍ରବଣାୟତାକ୍ଷୀଂ, ଦୀର୍ଘବିରହଜ୍ୱର-ଶିଥିଳାଙ୍ଗଯଷ୍ଟିଂ ତାଂ ଯଦି ପୁନଃ ପଶ୍ୟାମି, ତତଃ ଅତିଗାଢ଼ଂ ଅଙ୍ଗୈଃ ସମୁପଗୂହ୍ୟ, ଅହଂ ନୟନେ ନ ଉନ୍ମୀଳୟାମି, ହୃଦି ତାଂ ସ୍ମରାମି । ୬ ।

ଅର୍ଥ—ଏବେ ମଧ୍ୟ କର୍ଣ୍ଣାୟତଲୋଚନା ଦୀର୍ଘ ବିରହରେ ଶିଥିଳ ଅଙ୍ଗଯୁକ୍ତା ତାକୁ, ଯଦି ପୁନଃ ଦେଖିବି, ତେବେ ଅତିଦୃଢ଼ଭାବରେ ଅଙ୍ଗଦ୍ୱାରା ଆଲିଙ୍ଗନ କରି, ମୁଁ ଆଖିକୁ ମେଲେଇବି ନାହିଁ, ହୃଦୟରେ ତାକୁ ସ୍ମରଣ କରୁଛି । ୬ ।

ପ୍-୬୦—(ଅନ୍ୱୟଃ) ଅଦ୍ୟ ଅପି ସୁରତତାଣ୍ଡବସୂତ୍ରଧାରୀଂ, ପୂର୍ଣ୍ଣେନ୍ଦୁ-ସୁନ୍ଦରମୁଖୀଂ, ମଦବିହ୍ୱଳାଙ୍ଗୀଂ, ତନ୍ୱୀଂ, ବିଶାଳଜଘନସ୍ତନ-ଭାରଖିନ୍ନାଂ, ବ୍ୟାଲୋଲକୁନ୍ତଳକଳାପବତୀଂ ତାଂ ସ୍ମରାମି ।୬ ।

ଅର୍ଥ—ଏବେ ମଧ୍ୟ ସୁରତତାଣ୍ଡବନୃତ୍ୟର ସୂତ୍ରଧାରିଣୀ, ପୂର୍ଣ୍ଣଚନ୍ଦ୍ର ସଦୃଶ ସୁନ୍ଦରମୁଖୀ, ଯୌବନ-ମଦଦ୍ୱାରା ବିହ୍ୱଳଅଙ୍ଗଯୁକ୍ତା, କୃଶା, ବିଶାଳ ଜଘନ ଓ ସ୍ତନଭାରବଶତଃ ଖିନ୍ନା, ଇତସ୍ତତଃ ଆନ୍ଦୋଳିତ କେଶସମୂହବତୀ ତାକୁ ସ୍ମରଣ କରୁଅଛି । ୬ ।

ପ୍-୬୧—(ଅନ୍ୱୟଃ) ଅଦ୍ୟ ଅପି ମସୃଣଚନ୍ଦନପଙ୍କମିଶ୍ରକସ୍ତୂରିକା-ପରିମଳୋତ୍ଥିତଗନ୍ଧଦେହାଂ ଶୟନେ ଅନ୍ୟୋନ୍ୟ-ଚଞ୍ଚୁପୁଟଚୁମ୍ବନଲଗ୍ନଖଞ୍ଜନଯୁଗ୍ମାଭିରାମନୟନାଂ ତାଂ ସ୍ମରାମି ।୮

ଅର୍ଥ—ଏବେ ମଧ୍ୟ ଚିକ୍କଣଚନ୍ଦନରେ ମିଶ୍ରିତ କସ୍ତୂରିକା ପରିମଳ-ରେ ସୁଗନ୍ଧିତଶରୀରା, ଶୟନାବସ୍ଥାରେ ପରସ୍ପର ଚଞ୍ଚୁପୁଟଚୁମ୍ବନବଶତଃ ସଂଲଗ୍ନଖଞ୍ଜନଯୁଗ୍ମସଦୃଶ ମନୋହରନେତ୍ରୀ ତାକୁ ସ୍ମରଣ କରୁଛି । ୮ ।

ପ୍-୬୧—(ଅନ୍ୱୟଃ) ଅଦ୍ୟ ଅପି ପ୍ରିୟାୟାଃ ତତ୍ କନକଗୌର-କୃତାଙ୍ଗରାଗଂ, ପ୍ରସ୍ୱେଦବିନ୍ଦୁବିତତଂ, ରତିଖେଦବିଲୋଲନେତ୍ରଂ, ରାହୂପରାଗପରିମୁକ୍ତଂ, ଇନ୍ଦୁବିମ୍ବଂ, ଇବ ବଦନଂ, ଅନ୍ତ ସ୍ମରାମି । ୯ ।

ଅର୍ଥ—ଏବେ ମଧ୍ୟ ପ୍ରିୟତମାର ସେହି କନକସଦୃଶଗୌର-ଅର୍ଥାତ୍ କୁଙ୍କୁମଦ୍ୱାରା ଅଙ୍ଗରାଗଯୁକ୍ତା, ସ୍ୱେଦବିନ୍ଦୁବ୍ୟାପ୍ତା, ସୁରତ-ଖେଦରେ ଚଞ୍ଚଳନେତ୍ର, ରାହୁର ଗ୍ରାସରୁ ପରିମୁକ୍ତ ଚନ୍ଦ୍ରବିମ୍ବ ସଦୃଶ ମୁଖକୁ ମରଣ ସମୟରେ ସ୍ମରଣ କରୁଛି । ୯ ।

ସୂ-୭୬ (ଅନ୍ୱୟଃ) ଅଦ୍ୟ ଅପି ନିଧୁବନେ ମଧୁଗନ୍ଧପୂର୍ଣ୍ଣାଂ, ଲକ୍ଷାଧରାଂ
କୃଶତନ୍ତୁଂ, ସ୍ଖଳଲୋଚନାଂ, କାଶ୍ମୀରପଙ୍କମୃଗନାଭି
କୃତାଙ୍ଗରାଗାଂ, କର୍ପୂରପୂଗପରିପୂର୍ଣ୍ଣମୁଖୀଂ ତାଂ ସ୍ମରାମି ।୧୦।

ଅର୍ଥ—ଏବେ ମଧ୍ୟ ସୁରତକ୍ରୀଡାରେ ମଦ୍ୟଗନ୍ଧକୁସୁମଯୁକ୍ତା, ଅସ୍ୱାଦିତାଧରା, କୃଶଶରୀରା, ଚଞ୍ଚଳ ଓ ବିସ୍ତୃତନେତ୍ରୀ, କୁଙ୍କୁମପଙ୍କ ଓ କସ୍ତୁରୀଦ୍ୱାରା କୃତାଙ୍ଗରାଗା, କର୍ପୂରସୁଗନ୍ଧିତ ଅଦ୍ୱାରା ପୂର୍ଣ୍ଣମୁଖୀ, ତାକୁ ସ୍ମରଣ କରୁଛି ।୧୦ ।

ସୂ-୭୬—(ଅନ୍ୱୟଃ) ଅଦ୍ୟ ଅପି ତସ୍ୟାଃ ପ୍ରିୟାୟାଃ ବିପରୀତରତା-
ଭିଯୋଗେ ତତ୍ ଆନ୍ଦୋଳନଶ୍ରମଜଳସ୍ଫୁଟସାନ୍ଦ୍ରବିନ୍ଦୁ-
ମୁକ୍ତାଫଳପ୍ରକରବିଚ୍ଛୁରିତଂ କନକକୁଣ୍ଡଳଚୁମ୍ବି ଆସ୍ୟଂ
ସ୍ମରାମି । ୧୧ ।

ଅର୍ଥ—ଏବେ ମଧ୍ୟ ସେହି ପ୍ରିୟାର ବିପରୀତରତ ପ୍ରସଙ୍ଗରେ ଆନ୍ଦୋଳନଜନିତ ସ୍ୱେଦଜଳଦ୍ୱାରା ପ୍ରକଟିତ ସଘନ ବିନ୍ଦୁରୂପକ ମୁକ୍ତାସମୂହଦ୍ୱାରା ଦେଦୀପ୍ୟମାନ, ସ୍ୱର୍ଣ୍ଣକୁଣ୍ଡଳ ଯୁକ୍ତ ମୁଖ କୁ ସ୍ମରଣ କରୁଛି । ୧୧ ।

ସୂ-୭୮—(ଅନ୍ୱୟଃ) ଅଦ୍ୟ ଅପି ରହେସି ମୟି ଝୁତବତ, କୋପାତ୍
ଅନାଲପନ୍ତ୍ୟା ଝିଛପାଲପୁତ୍ର୍ୟା, ଜୀବ ଇତି ମଙ୍ଗଳବଚଃ
ପରିହୃତ୍ୟ, କଣ୍ଠେ କନକପଦ୍ମଂ କୃତଂ, ତତ୍ ମେ ମନସି
ସଂପରିବର୍ତ୍ତିତେ । ୧୨ ।

ଅର୍ଥ—ଏବେ ମଧ୍ୟ ରାତ୍ରିରେ ମୁଁ ଛିଙ୍କିବାରୁ କୋପରେ କଥା ନ କହି, ରାଜନନ୍ଦିନୀ 'ଜୀବ' ଏପରି ମଙ୍ଗଳ ବଚନକୁ ପରିହାର କରି ( ମୋ

କଥା ନ ଶୁଣିବାପାଇଁ ) କାନରେ ତାଙ୍କ ଦେଉଥିଲ । ସେହି କଥା ମୋ ମନରେ ଅଙ୍କିତ ହୋଇଅଛି । ୧୨ ।

ପୂ-୨୩—(ଅନ୍ୱୟଃ) ଅଦ୍ୟ ଅପି ତସ୍ୟାଃ ତତ୍ ସ୍ତନସ୍ୱଭଙ୍ଗୁର-ଦୃଷ୍ଟିପାତଂ, ରତିବଭ୍ରମଗାତ୍ରଭଙ୍ଗମ୍; ବସ୍ତ୍ରାଞ୍ଚଳସ୍ଖଳନଗୁଚ୍ଛ-ପୟୋଧରାନ୍ତଂ, ଦଶନକ୍ଷତମଣ୍ଡନଂ ଦନ୍ତଚ୍ଛଦଂ ଚ ସ୍ମରାମି ।୧୩।

ଅର୍ଥ—ଏବେ ମଧ୍ୟ ତାହାର ସେହି ସ୍ନେହରେ କ୍ଷଣିକଦୃଷ୍ଟିପାତ, (କଟାକ୍ଷ) ରତିବିଳାସ ହେତୁ ଗାତ୍ରଭଙ୍ଗ, ବସ୍ତ୍ରର ଅଞ୍ଚଳ ଖସିବାଦ୍ୱାରା ସୁନ୍ଦର ସ୍ତନଭାଗ ଓ ଦନ୍ତକ୍ଷତଶୋଭିତ ଓଷ୍ଠକୁ ସ୍ମରଣ କରୁଛି । ୧୩ ।

ପୂ-୨୪—(ଅନ୍ୱୟଃ) ଅଦ୍ୟ ଅପି ଅଶୋକକରପଲ୍ଲବରକ୍ତହସ୍ତଂ, ମୁକ୍ତାଫଳପ୍ରକରଚୁମ୍ବିତଚୂଚୁକାଗ୍ରଂ, ଅନ୍ତଃସ୍ମିତୋଚ୍ଛ୍ୱସିତ-ପାଣ୍ଡୁରଗଣ୍ଡଭିତ୍ତିଂ, ଅଳସହଂସଗତିଂ ତାଂ ବଲ୍ଲଭାଂ ସ୍ମରାମି । ୧୪ ।

ଅର୍ଥ—ଏବେ ମଧ୍ୟ ଅଶୋକ ବୃକ୍ଷର ପତ୍ର ସଦୃଶ ଯେଉଁ ତୋର (ରକ୍ତ) କରପଲ୍ଲବ ତା'ର ରକ୍ତକାନ୍ତ, ମୁକ୍ତାଗଣ ସଲଗ୍ନ ସ୍ତନାଗ୍ରଭାଗ, ଅନ୍ତଃସ୍ମିତଦ୍ୱାରା ପ୍ରସ୍ଫୁଟିତ ପାଣ୍ଡୁର କପୋଳଭାଗ, ଅଳସ ହଂସଗମନା ସେହି ପ୍ରିୟତମାକୁ ସ୍ମରଣ କରୁଛି । ୧୪ ।

ପୂ-୨୫—(ଅନ୍ୱୟଃ) ଅଦ୍ୟ ଅପି ଉତ୍ଥିତାୟାଃ, ଲଜ୍ଜାବଶାତ୍ ନ କୃତଂ ବ୍ରଜନ୍ତ୍ୟାଃ ତସ୍ୟାଃ, କରଧୃତଂ ଅବ୍ୟକ୍ତଫେନରୁଚିରାମ୍ବରଂ, କୁସୁମରେଣୁସମୋରୁଦେଶେ ନ୍ୟସ୍ତଂ ତତ୍ ନଖରକ୍ଷତଲକ୍ଷ୍ମ ସ୍ମରାମି । ୧୫ ।

ଅର୍ଥ—ଏବେ ମଧ୍ୟ, ଶଯ୍ୟାରୁ ଉଠି ପଡ଼ୁଥିବା ଏବଂ ଲଜ୍ଜାବଶତଃ ଅନ୍ୟ କେଉଁଆଡ଼େ ନ ଯାଉଥିବା, ତାହାର ଭିଡ଼କର ହାତରେ ଧରିଥିବା ଫେନ ସଦୃଶ ସୁନ୍ଦର ବସ୍ତ୍ର ଓ ପୁଷ୍ପରେଣୁସଦୃଶ ଉରୁଦେଶରେ ନ୍ୟସ୍ତ ସେହି ନଖକ୍ଷତ ଚିହ୍ନକୁ, ସ୍ମରଣ କରୁଅଛି । ୧୫ ।

ପୃ-୫୬—(ଅନ୍ୱୟଃ) ଅଦ୍ୟ ଅପି ବିଧୃତକଜ୍ଜଳଲୋଳନେତ୍ରାଂ ପୃଥ୍ୱୀଂ ପ୍ରଭୂତକୁସୁମାକୁଳକେଶପାଶାଂ ସିନ୍ଦୂରସଙ୍କୁଳିତମୌକ୍ତିକ-ହାରଦଣ୍ଡାଂ ଅବଦ୍ଧହେମକଟିକାଂ ତାଂ ରହସି ସ୍ମରାମି । ୧୬ ।

ଅର୍ଥ—ଏବେ ମଧ୍ୟ କଜ୍ଜଳଯୁକ୍ତ ଚପଳନୟନା, ପୃଥୁଳା, ଅଧିକ ପୁଷ୍ପଯୁକ୍ତ କେଶପାଶା, ସିନ୍ଦୂରଲିପ୍ତ ମୌକ୍ତିକ-ହାରଯୁକ୍ତା ସ୍ୱର୍ଣ୍ଣର ଅଣ୍ଟାସିକୁଳିକୁ ପିନ୍ଧିଥିବା, ତାକୁ ଏକାନ୍ତରେ ସ୍ମରଣ କରୁଅଛି । ୧୬ ।

ପୃ-୬୭—(ଅନ୍ୱୟଃ) ଅଦ୍ୟ ଅପି ଗଳିତବନ୍ଧନକେଶପାଶାଂ, ସ୍ରସ୍ତସ୍ରଜଂ, ସ୍ମିତସୁଧାମଧୁରାଧରୋଷ୍ଠୀଂ ପୀନୋନ୍ନତସ୍ତନଯୁଗୋପରି-ଚାରୁଚୁମ୍ବନ୍ମୁକ୍ତାବଳୀଂ, ଲୋଳଦୃଶାଂ ତାଂ ରହସି ସ୍ମରାମି । ୧୭ ।

ଅର୍ଥ—ଏବେ ମଧ୍ୟ ବନ୍ଧନରହିତ କେଶପାଶା, ଭ୍ରଷ୍ଟମାଳା ମନ୍ଦସ୍ମିତ ଶୋଭିତ ଅଧରୋଷ୍ଠୀ, ପୀନୋନ୍ନତ ସ୍ତନଯୁଗ୍ମ ଉପରେ ସଂଲଗ୍ନ ମୁକ୍ତାବଳୀ, ଚପଳନୟନା ତାକୁ ଏକାନ୍ତରେ ସ୍ମରଣ କରୁଅଛି । ୧୭ ।

ପୃ-୬୮—(ଅନ୍ୱୟଃ) ଅଦ୍ୟ ଅପି ରତ୍ନଦୀପମାଳାମୟୂଖପୁଞ୍ଜୈଃ ଦଳିତାନ୍ଧକାରେ ଧବଳବେଶ୍ମନି ଅଦ୍ୟ ସମ୍ମୁଖଦର୍ଶନାର୍ଥଂ ରହସି ମେ ପ୍ରାପ୍ତା, ଲଜ୍ଜାଭୟାର୍ତ୍ତିନୟନାଂ ତାଂ ଅନୁଚିନ୍ତୟାମି । ୧ ।

ଅର୍ଥ—ଏବେ ମଧ୍ୟ ରତ୍ନନିର୍ମିତ ଦୀପପଂକ୍ତିର କିରଣସମୂହଦ୍ୱାରା ନଷ୍ଟାନ୍ଧକାର ଧବଳଗୃହରେ, ଆଜି ସମ୍ମୁଖଦର୍ଶନ ନିମିତ୍ତ ଏକାନ୍ତରେ ଆଗତା ଲଜ୍ଜାଭୟଯୁକ୍ତନୟନା, ତାକୁ ପୁନଃ ସ୍ମରଣ କରୁଛି । ୧ ।

ପୃ-୬୮—(ଅନ୍ୱୟଃ) ଅଦ୍ୟ ଅପି ତତ୍ ବିରହବହ୍ନିନିପୀଡିତାଙ୍ଗୀଂ ତନ୍ୱୀଂ କୁରଙ୍ଗନୟନାଂ ସୁରତୈକପାତ୍ରୀଂ ନାନା ବିଚିତ୍ରକୃତ-ମଣ୍ଡନମଣ୍ଡିତାଙ୍ଗୀଂ ରାଜହଂସଗମନାଂ ତାଂ ରହସି ସ୍ମରାମି । ୨ ।

ଅର୍ଥ—ଏବେ ମଧ୍ୟ ସେହି ବରଦ୍ୱାରଗ୍ନିଦ୍ୱାରା ପୀଡ଼ିତାବସ୍ଥା, କୃଶାଙ୍ଗୀ, ମୃଗନୟନା, ସୁରତର ମୁଖ୍ୟପାତ୍ରୀ, ନାନା ବଚନମଣ୍ଡନଦ୍ୱାରା ଶୋଭିତାବସ୍ଥା, ରାଜହଂସଗମନା; ତାକୁ ଏକାନ୍ତରେ ସ୍ମରଣ କରୁଛି । ୨ ।

ଶ୍ଳୋ-୭୯—(ଅନ୍ୱୟଃ) ଅଦ୍ୟ ଅପି ବହସିତାଂ କୁଚଭାରନମ୍ରାଂ, ମୁକ୍ତାକଳାପଧବଳୀକୃତକଣ୍ଠମାଳାଂ, ତନ୍ମ୍ୟକେଳିମନ୍ଦିରଗତାଂ, କୁସୁମାୟୁଧସ୍ୟ କାନ୍ତାଂ, ରୁଚିରୋଜ୍ଜ୍ୱଳପୁଷ୍ପକେତୁଂ ତାଂ ସ୍ମରାମି । ୩ ।

ଅର୍ଥ—ଏବେ ମଧ୍ୟ, ହାସ୍ୟଯୁକ୍ତା, ସ୍ତନଭାରନମ୍ରା, ମୁକ୍ତାସମୂହ-ବେଷ୍ଟିତକଣ୍ଠମାଳା, ସେହି କ୍ରୀଡ଼ାସଦନଗତା, ପୁଷ୍ପାୟୁଧର ପତ୍ନୀ, ମନୋହର ଓ ଉଜ୍ଜ୍ୱଳ ପୁଷ୍ପପତାକା ତୁଲ୍ୟ, ତାକୁ ସ୍ମରଣ କରୁଛି । ୩ ।

ଶ୍ଳୋ-୭୦—(ଅନ୍ୱୟଃ) ଅଦ୍ୟ ଅପି ସୁରତକ୍ଲମବିହ୍ୱଳାୟାଃ ତସ୍ୟାଃ ପ୍ରିୟାୟାଃ, ଗୃହଂଶୁତହୁଙ୍କାରୋଚିତାର୍ଥଂ ଅବ୍ୟକ୍ତନିସ୍ୱନିତ-କାତରକଥ୍ୟମାନସଙ୍କୀର୍ଣ୍ଣବର୍ଣ୍ଣରୁଚିରଂ ବଦନଂ ସ୍ମରାମି । ୪ ।

ଅର୍ଥ—ଏବେ ମଧ୍ୟ, ସୁରତ କ୍ଳାନ୍ତିଦ୍ୱାରା ବିକଳା, ସେହି ପ୍ରିୟାର ଶତବୃଂହକର ଯୋଗ୍ୟ, ଅସ୍ପଷ୍ଟଧ୍ୱନିରେ ଓ କାତରଭାବରେ କଥିତ ଅସ୍ପଷ୍ଟ ବର୍ଣ୍ଣଦ୍ୱାରା ସୁନ୍ଦର,ମୁଖକୁ ସ୍ମରଣ କରୁଛି । ୪ ।

ଶ୍ଳୋ-୭୦—(ଅନ୍ୱୟଃ) ଅଦ୍ୟ ଅପି ସୁରତଘୂର୍ଣ୍ଣନିମୀଳିତାକ୍ଷୀଂ ସ୍ରସ୍ତାଙ୍ଗ-ଯଷ୍ଟିଗଳିତାଂଶୁକକେଶପାଶାଂ ଶୃଙ୍ଗାରବାରିରୁହକାନନ-ରାଜହଂସୀଂ ତାଂ, ଜନ୍ମାନ୍ତରେ ଅପି, ନିଧନେ ଅପି ଅନୁଚିନ୍ତୟାମି । ୫ ।

ଅର୍ଥ—ଏବେ ମଧ୍ୟ ସୁରତବଶତଃ ଘୂର୍ଣ୍ଣିତ ଓ ନିମୀଳିତ ନେତ୍ରୀ, ଶିଥିଳଅଙ୍ଗଯଷ୍ଟିରୁ ଗଳିତ ବସନା ଓ ଗଳିତକେଶପାଶା, ଶୃଙ୍ଗାର-ପଦ୍ମବନର ରାଜହଂସୀ, ତାକୁ ଅନ୍ୟ ଜନ୍ମରେ ମଧ୍ୟ, ମୃତ୍ୟୁରେ ମଧ୍ୟ, ଅନୁଚିନ୍ତନ କରୁଛି । ୫ ।

ପୃ-୭୮—(ଅନ୍ୱୟଃ) ଅଦ୍ୟ ଅପି, ପ୍ରଣୟିନୀଂ, ମୃଗଶାବକାକ୍ଷୀଂ, ପୀୟୂଷପୂର୍ଣ୍ଣକୁଚକୁମ୍ଭଯୁଗଂ ବହନ୍ତୀଂ, ତାଂ ଯଦି ପୁନଃ ଦିବସାବସାନେ ଅହଂ ପଶ୍ୟାମି, (ତର୍ହି) ସ୍ୱର୍ଗାପବର୍ଗନରରାଜ୍ୟସୁଖଂ ତ୍ୟଜାମି । ୬ ।

ଅର୍ଥ—ଏବେ ମଧ୍ୟ ପ୍ରଣୟିନୀ, ମୃଗଶିଶୁନେତ୍ରୀ, ଅମୃତପୂର୍ଣ୍ଣକୁଚକୁମ୍ଭଯୁଗଳକୁ ଧାରଣ କରିଥିବା, ତାକୁ ଯଦି ପୁନଃ ସନ୍ଧ୍ୟାସମୟରେ ମୁଁ ଦେଖିବି, ତେବେ ସ୍ୱର୍ଗ ମୋକ୍ଷ ଓ ରାଜ୍ୟସୁଖକୁ ମଧ୍ୟ ତ୍ୟାଗ କରିବି । ୬ ।

ପୃ-୭୧—(ଅନ୍ୱୟଃ) ଅଦ୍ୟ ଅପି କ୍ଷିତିତଳେ ବରକାମିନୀନାଂ ସର୍ବାଙ୍ଗସୁନ୍ଦରତୟା ପ୍ରଥମୈକରେଖାଂ ସଂସାରନାଟକରସୋତ୍ତମପାନପାତ୍ରୀଂ କନ୍ଦର୍ପବାଣଭିଲାଂ ତାଂ କାନ୍ତାଂ ସ୍ମରାମି । ୭ ।

ଅର୍ଥ—ଏବେ ମଧ୍ୟ ଭୂପୃଷ୍ଠରେ ଉତ୍ତମ ସ୍ତ୍ରୀମାନଙ୍କମଧ୍ୟରେ ସର୍ବାଙ୍ଗ ସୁନ୍ଦର ହେବାରୁ ଅଗ୍ରଣୀ, ସଂସାର-ନାଟକରସର ଉତ୍ତମ-ପାନପାତ୍ରୀ, କନ୍ଦର୍ପବାଣବ୍ୟଥିତା ସେହି କାନ୍ତାକୁ ସ୍ମରଣ କରୁଛି । ୭ ।

ପୃ-୭୨—(ଅନ୍ୱୟଃ) ଅଦ୍ୟ ଅପି ନିଦ୍ରିତବତ୍ ଇବ ଅଙ୍ଗଲଗ୍ନାଂ, ପ୍ରୌଢ଼ପ୍ରତାପମଦନାନଳତପ୍ତଦେହାଂ ବାଳାଂ ଅନାଥଶରଣାଂ ଅନୁକମ୍ପନୀୟାଂ ପ୍ରାଣାଧିକାଂ ତାଂ, ଅହଂ କ୍ଷଣଂ ନହି ବିସ୍ମରାମି । ୮ ।

ଅର୍ଥ—ଏବେ ମଧ୍ୟ ଶୋଇଲା ପରି ଅଙ୍ଗରେ ଲାଗିଥିବା, ଅତ୍ୟନ୍ତ ତାପଯୁକ୍ତ କାମାଗ୍ନି ଦ୍ୱାରା ସନ୍ତପ୍ତଶରୀରା, ବାଳା, ଅନାଥଶରଣା, ଦୟନୀୟା ପ୍ରାଣାଧିକା ତାକୁ ମୁଁ କ୍ଷଣେ ମଧ୍ୟ ବିସ୍ମରଣ କରିପାରୁ ନାହିଁ । ୮ ।

ପୃ-୭୨—(ଅନ୍ୱୟଃ) ଅଦ୍ୟ ଅପି ପ୍ରଥମତଃ ବରସୁନ୍ଦରୀଣାଂ ସ୍ନେହୈକପାତ୍ରଘଟିତାବନିପାଲପୁତ୍ରୀଂ ମମ ବିୟୋଗହୁତାଶନାର୍ଚ୍ଚିଂ, ଦାହଜ୍ୱରଂ ସୋଢୁଂ ନ ଶକ୍ୟତେ, ଇତି ତାଂ ପ୍ରତିଚିନ୍ତୟାମି ।୯।

ଅର୍ଥ—ଏବେ ମଧ୍ୟ (ବିଧାତାଙ୍କର) ପ୍ରଥମ କରି ଉତ୍ତମ ସ୍ତ୍ରୀ ମଧ୍ୟରେ ଅତି ଯତ୍ନରେ ନିର୍ମିତା ରାଜପୁତ୍ରୀ, ମୋର ବିୟୋଗାଗ୍ନି ନାମକ ଦାହଜ୍ୱରକୁ, ସହିବାପାଇଁ ସମର୍ଥା ନୁହେଁ, ଅତଃ ତା ପ୍ରତି ଚିନ୍ତା କରୁଅଛି ।୯।

ପୃ-୬୨—(ଅନ୍ୱୟଃ) ଅଦ୍ୟ ଅପି, କିଦଶାତ୍ ବିହାୟ (ମମ) ବିସ୍ମୟକସ୍ୟ ବୁଦ୍ଧିଃ (ତାଂ ବିହାୟ) ଅନ୍ୟ ବିଷୟେ ନ ଚ, କିଂ ଅହଂ କରୋମି, ଅନ୍ତକାଲେ ପ୍ରତିମୂର୍ତ୍ତିଂ ଜାନନ୍ ଅପି, କାନ୍ତା ଇତି, ବକ୍ଷୋଭୂତମା ଇତି, ମମ ଇତି, ଧୀର (ବୁଦ୍ଧି ର୍ଜାୟତେ) ।୧୦।

ଅର୍ଥ—ଏବେ ମଧ୍ୟ, ଦେବଙ୍କୁ ଛାଡ଼ି ମୋର ଅସ୍ଥିର୍ଜନସ୍ୟ ବୁଦ୍ଧି ତା' ଛଡ଼ା ଅନ୍ୟ ବିଷୟରେ ନାହିଁ, ମୁଁ କ'ଣ କରିବି, ମରଣକାଳର ପ୍ରତିମୂର୍ତ୍ତିକୁ ଜାଣିଲେ ମଧ୍ୟ, ସେ କାନ୍ତା, ସେ ବକ୍ଷୋଭୂତମା, ସେ ମୋର, ଏହିପରି ମୋର ନିଶ୍ଚଳା ବୁଦ୍ଧି ହେଉଅଛି ।୧୦।

ପୃ-୬୩—(ଅନ୍ୱୟଃ) ଅଦ୍ୟ ଅପି ମତ୍ପ୍ରୟାଂ ଗମନଂ ଇତି, ଉଦିତଂ ଶ୍ରୁତ୍ୱା ଏବ ତ୍ରାସହରିଣୀଂ ଇବ ଚଞ୍ଚଳାକ୍ଷୀଂ ବାଚଃସ୍ଖଲଦ୍ବିଗଳଦଶ୍ରୁଜଳାକୁଳାକ୍ଷୀଂ ଗୁରୁଶୋକବିନମ୍ରବକ୍ତ୍ରାଂ ତାଂ ସଚିନ୍ତୟାମି ।୧୧।

ଅର୍ଥ—ଏବେ ମଧ୍ୟ ମୋର (ବିଧିକୁ) ଯିବା, ଏପରି କେବଳ ଶୁଣି, ଭୟଭୀତା ହରିଣୀ ସଦୃଶ ଚପଳାକ୍ଷୀ, ସ୍ଖଳଦ୍ଗଳା ଅଶ୍ରୁଜଳାକୁଳନୟନା ଅତ୍ୟନ୍ତଶୋକବଶତଃ ବିନମ୍ରବଦନା ତାକୁ ଚିନ୍ତନ କରୁଛି ।୧୧।

ପୃ-୬୪—(ଅନ୍ୱୟଃ) ଅଦ୍ୟ ଅପି କ୍ଷଣବିୟୋଗବିଷୋପମେୟାଂ ପୁନଃ ସଙ୍ଗେ ବହୁତରଂ ଅମୃତାଭିଷେକାଂ ମନ୍ମଥବିଧାରଣକସ୍ୟାଂ ମଦନାଭିରାମାଂ ତାଂ ସୁଦତୀଂ ସ୍ମରାମି, ବ୍ରହ୍ମକେଶବହରୈଃ କିଂ ।୧୨।

ଅର୍ଥ—ଏବେ ମଧ୍ୟ ମୋର କ୍ଷଣବିୟୋଗ ଯାହାପାଇଁ ବଜ୍ରସଦୃଶ, ପୁନଃ ସଙ୍ଗମ ବିଶେଷ ଭାବରେ ଅମୃତର ଅଭିଷେକ ସଦୃଶ, ମୋର ପ୍ରାଣଧାରିଣୀ ମଦନପୀଡ଼ିତା ସେହି ସୁଦତୀକୁ ସ୍ମରଣ କରୁଛି । ବ୍ରହ୍ମା, ବୈଷ୍ଣବ, ଶିବଙ୍କ ଶରଣରେ ମୋର କଅଣ ? ।୧୨।

ପୃ-୭୮—(ଅନ୍ୱୟଃ) ଅଦ୍ୟ ଅପି, ଯତତା ମୟା ଅପି ତତ୍ ସୁଲକ୍ଷଣଂ ବଦନଂ, କଦାଚିତ୍ ତତ୍ ସଦୃଶତଃ ନ ଦୃଷ୍ଟଂ । ଇହ ଅତିବିମଳତ୍ୱମହାଗୁଣେନ ତତ୍ କାନ୍ତିନିର୍ଜିତରେ ଦ୍ୱିଜରାଜ-କାନ୍ତିଂ ନହନ୍ତ । ୧୩ ।

ଅର୍ଥ—ଏବେ ମଧ୍ୟ, ଚେଷ୍ଟାଯୁକ୍ତ ମୁଁ ମଧ୍ୟ ସେହି ସୁଲକ୍ଷଣ ବଦନର କେବେହେଲେ ସାଦୃଶ୍ୟ ଦେଖିନାହିଁ, ଏହି ସଂସାରରେ ଅତ୍ୟନ୍ତ-ନିର୍ମଳଗୁଣଦ୍ୱାରା ସେହି କାନ୍ତିଦ୍ୱାରା ନିର୍ଜିତ ଚନ୍ଦ୍ରରଶ୍ମିକୁ ନାଶ କରୁଅଛି । ୧୩ ।

ପୃ ୭୬—(ଅନ୍ୱୟଃ) ଅଦ୍ୟ ଅପି ଯମଦୂତକଳ୍ପୈଃ, ଦୁର୍ବାରଭୀଷଣକରୈଃ, ବାସଗୃହତଃ ମମ୍ପି ନୀୟମାନେ (ସତି) ମଦେନ ତସ୍ୟା ବହୁ ବିଧଂ କିଂ କିଂ ନ କୃତଂ, ବକ୍ତୁଂ ନ ପାର୍ଯ୍ୟତେ, ଇତି ମେ ମନଃ ବ୍ୟଥତେ ।୧।

ଅର୍ଥ—ଏବେ ମଧ୍ୟ ଯମଦୂତ ସଦୃଶ, ନିବାରଣରହିତ ଭୟଙ୍କର ହସ୍ତଦ୍ୱାରା, ମୁଁ ବାସଗୃହରୁ ନିଅଗଲାରୁ, ଗର୍ବରେ ସେ ବହୁପ୍ରକାର କ'ଣ କ'ଣ ନ କରିଛି, ସେହି ସବୁ ମୁଁ କହି ପାରୁନାହିଁ । ଅତଃ ମୋ ମନ ବ୍ୟଥିତ ହେଉଅଛି ।୧।

ପୃ ୭୬—(ଅନ୍ୱୟଃ) ଅଦ୍ୟ ଅପି ମମ ବକ୍ଷସ୍ଥାୟାଃ, ଲାବଣ୍ୟନିର୍ଜିତରତି-ଷଡ କାମଦର୍ପଂ ପୂର୍ଣ୍ଣେନ୍ଦୁସୁନ୍ଦରମୁଖଂ ଭୂୟଃ ପୁନଃ ପ୍ରତି ମୁହୁଃ ଯତ୍ ନ ବିଲୋକ୍ୟତେ (ଅତଃ) ମେ ହୃଦୟଂ ନିଷ୍ପିଦନଂ କୁନୋତ ।୨।

ଅର୍ଥ—ଏବେ ମଧ୍ୟ ମୋର ପ୍ରିୟତମାର ଶୋକରେ କାମ ଗର୍ବନାଶକାରଣୀ ଉଚ୍ଚ ମଧ୍ୟ ପରିକ୍ରିତ ଏପରି ପୂର୍ଣ୍ଣଚନ୍ଦ୍ର ସୁନ୍ଦର ମୁଖକୁ ବାରମ୍ବାର ଯେଉଁ କାରଣରୁ ନ ଦେଖୁଛି ଅତଃ ମୋର ହୃଦୟ ଦନରାତ୍ର ଦୁଃଖିତ ହେଉଅଛି ।୨।

ପୃ-୭୮—(ଅନ୍ୱୟଃ) ଅଦ୍ୟ ଅପି ବଳେନ ମନସା ଅବଧୃତାଂ, ସୁଦତୀଂ ମମ ଜୀବିତାଶାଂ ତାଂ ସଞ୍ଚିନ୍ତୟାମି, ନାନ୍ୟୋପଭୁକ୍ତନବ-ଯୌବନଭାରସାର ସା ଏବ ଜନ୍ମାନ୍ତରେ ଅପି ମମ ଯଥା ଗତିଃ ସ୍ୟାତ୍ ।୩।

ଅର୍ଥ—ଏବେ ମଧ୍ୟ ବଳପୂର୍ବକ ମନରେ ସ୍ଥିତା, ସୁଦତୀ, ମୋର ଜୀବନର ଆଶାସ୍ୱରୂପିଣୀ ତାକୁ ଚିନ୍ତନ କରୁଛି, ଅନ୍ୟଦ୍ୱାରା ଅନୁପଭୁକ୍ତ ନବଯୌବନା, ସେହି ଅନ୍ୟ ଜନ୍ମରେ ମଧ୍ୟ ମୋର ଯେପରି ଗତି ହେବ ।୩।

ପୃ-୭୯—(ଅନ୍ୱୟଃ) ଅଦ୍ୟ ଅପି ତଦ୍‌ବଦନପଙ୍କଜଗନ୍ଧଲବ୍ଧଭ୍ରାମ୍ୟ-ଦ୍ଦ୍ୱିରେଫଚୟଚୁମ୍ବିତଗଣ୍ଡଦେଶାଂ (ସ୍ମରାମି) ଲୀଳାବଧୂତ-କରପଲ୍ଲବକଙ୍କଣାନାଂ କ୍ୱାଣଃ ମଦ୍ଧୃଦୟଂ ମନଃ ସୁତରାଂ ଦହତି ।୪।

ଅର୍ଥ—ଏବେ ମଧ୍ୟ ସେହି ମୁଖ-କମଳଗନ୍ଧରେ ଲୁବ୍ଧ ହୋଇ ବୁଲୁଥିବା ଭ୍ରମରପଙ୍କ୍ତିଦ୍ୱାରା ଚୁମ୍ବିତକପୋଳା, ତାକୁ ସ୍ମରଣ କରୁଛି । ଲୀଳାରେ କମ୍ପିତ ହସ୍ତସ୍ଥିତ କଙ୍କଣମାନଙ୍କର ଶବ୍ଦ ମୋର ହୃଦୟକୁ ଅତ୍ୟନ୍ତ ତାପ ଦେଉଅଛି ।୪।

ପୃ-୭୯—(ଅନ୍ୱୟଃ) ଅଦ୍ୟ ଅପି ଅସ୍ୟମଧୁପାନବଶମାଗତେନ ମୟା ସ୍ତନମଣ୍ଡଳେ ଅପି ନଖପଦଂ ଦତ୍ତଂ ସ୍ମ, ବଦ୍ଧଭାଃ ତଦ୍‌ଭକ୍ତ-ରୋମପୁଲକୈଃ ସା ସମନ୍ତାତ୍ ଜାଗର୍ତ୍ତି, ରକ୍ଷୟତି, ପ୍ରସୂତାତ୍ ଲେଖୟତି ।୫।

ଅର୍ଥ—ଏବେ ମଧ୍ୟ ମଦ୍ୟପାନଦ୍ୱାରା ମତ୍ତ ମୁଁ ସ୍ତନରେ ମଧ୍ୟ ନଖକ୍ଷତ କରିଥିଲି, ନଖକ୍ଷତଜନିତ ଅଧିକ ରୋମାଞ୍ଚଦ୍ୱାରା ସେ ଭଲଭାବରେ ଜାଗ୍ରତ ହେଉଛି, ଆନନ୍ଦ ଦେଉଅଛି, ଯତ୍ନସହ ସେ ଅବଲୋକନ କରୁଛି ।

ପୃ-୮୦—(ଅନ୍ୱୟଃ) ଅଦ୍ୟ ଅପି କୋପବିମୁଖୀଭୂତଗନ୍ତୁକାମା, ଉକ୍ତଂ ବଚଃ ଯଦା ଏବ ନ ପ୍ରତିବଦତି (ତଦା) ବକ୍ତ୍ରଂ ଚୁମ୍ବାମି, କ୍ଷଣଂ ରୋଦମି, ପାଦେ ପତିତଃ ଅସ୍ମି, ତବ ଦାସଃ, ପ୍ରିୟତମେ (ମାଂ) ଭଜ (ଇତି) ସଂସ୍ମରାମି ।୮।

ଅର୍ଥ—ଏବେ ମଧ୍ୟ, କୋପରେ ବିମୁଖ ହୋଇ ଚାଲିଯିବା ଇଚ୍ଛାରେ, କଥିତ କଥାର ଯେବେ ଉତ୍ତର ନ ଦେଉଛି, ସେତେବେଳେ ମୁଁ ମୁଖକୁ ଚୁମ୍ବନ କରୁଛି, ଅତ୍ୟନ୍ତ କାନ୍ଦୁଛି, ପାଦରେ ପତିତ ହେଉଛି, ହେ ପ୍ରିୟତମେ ! ତୁମର ମୁଁ ଦାସ, ମତେ ଭଜ, ଏସବୁ ବିଷୟ ସ୍ମରଣ କରୁଛି ।୮।

ପୃ-୮୧—(ଅନ୍ୱୟଃ) ଅଦ୍ୟ ଅପି ସଖୀଭିଃ ଅପି ସାର୍ଦ୍ଧଂ ପ୍ରିୟାୟାଃ ବାସଗୃହେ ମନଃ ଧାବତି, ଅହଂ କିଂ କରୋମି, ଇହ କାନ୍ତାଙ୍ଗସଙ୍ଗପରିହାସବିଚିତ୍ରନୃତ୍ୟକ୍ରୀଡାଭିରାମେ ମଦାୟୁକାଲଃ ଯାତୁ । ।

ଅର୍ଥ—ଏବେ ମଧ୍ୟ ସଖୀଯୁକ୍ତ ପ୍ରିୟାର ବାସଗୃହ ପ୍ରତି ମୋ ମନ ପାଉଅଛି, ମୁଁ କ'ଣ କରିବି । ସଂସାରରେ କାନ୍ତାର ଅଙ୍ଗସଙ୍ଗ ପରିହାସ ଓ ନାନାନୃତ୍ୟ କ୍ରୀଡା ଆଦିରେ ମନୋହର, ମୋ ସମୟ ବିତୁ ।୭।

ପୃ-୮୨—(ଅନ୍ୱୟଃ) ଅଦ୍ୟ ଅପି ଶାପଂଗତା କିଂ ଫଣିପତ୍ନୀ, ସୁରପତେଃ ଅଥ କୃଷ୍ଣଲକ୍ଷ୍ମୀଃ ନ ଖଳୁ ତାଂ ବେଦ୍ମି, କିଂ ନୁ ଧାତା ଜଗତଃ ପରିମୋହନାୟ ଚ ବା ଯୁବତିରତ୍ନଦିଦୃକ୍ଷୟା ସା କଳ୍ପିତା ।୮।

ଅର୍ଥ—ଏବେ ମଧ୍ୟ ସେ ଶାପପ୍ରାପ୍ତା କ'ଣ ପାର୍ବତୀ, ଇନ୍ଦ୍ରଙ୍କର କ'ଣ ପତ୍ନୀ, ଅଥବା ବିଷ୍ଣୁଙ୍କର ଲକ୍ଷ୍ମୀ, ନିଶ୍ଚୟରୂପରେ ତାହା ଜାଣୁ ନାହିଁ । କ'ଣ ବିଧାତା ସଂସାରର ମୋହନପାଇଁ ଅଥବା ଶ୍ରେଷ୍ଠ ଯୁବତୀ ଦେଖିବା ଇଚ୍ଛାରେ ତାକୁ ନିର୍ମାଣ କରିଅଛି ।୮।

ପୃ-୮୨—(ଅନ୍ୱୟଃ) ଅଦ୍ୟ ଅପି ଜଗତି ଅନୁତ୍ତମସଦୃଶୀଂ ମେ ପରିଗ୍ରହଂ ତାଂ ଚ କଶ୍ଚିତ୍ ବର୍ଣ୍ଣୟିତୁଂ ନ ଶକ୍ନୋତି, ଖତ୍ଵ ସଦୃଶଯୋଃ ତୟୋଃ ରୂପଃ ଯେନ ଦୃଷ୍ଟଂ, ସ ଏବ ନରଃ ଯଦି ଶକ୍ତା ଭବେତ୍, ନ ଚ ଅନ୍ୟଃ ।୯।

ଅର୍ଥ—ଏବେ ମଧ୍ୟ ସଂସାରରେ ଭାଗ୍ୟପରି ମୋର ସ୍ତ୍ରୀକୁ କୌଣସି ଲୋକ ବର୍ଣ୍ଣନା କରିବାକୁ ସମର୍ଥ ନୁହେଁ, ନିଶ୍ଚିତ ଭାବେ ସେ ଦୁହିଙ୍କର ସାଦୃଶ୍ୟ ରୂପକୁ ଯେ ଦେଖିଛି ସେହି ମନୁଷ୍ୟ ଅବା ସମର୍ଥ ହୋଇପାରେ, ଅନ୍ୟ ନୁହେଁ । ୯ ।

ପୃ-୮୩—(ଅନ୍ୱୟଃ) ଅଦ୍ୟ ଅପି ପରିହାସହେତୋଃ ଉଜ୍ଜ୍ୱଳାସ୍ୟଂ, ବିଶ୍ରାନ୍ତକର୍ଣ୍ଣଯୁଗଳଂ, ନୟନଜଜ୍ଜ୍ୱଳଂ ତତ୍, ଅଙ୍ଗେ ନବୀନ-ପୟୋଧରଭ୍ୟାଂ କ୍ଷୀଣଂ, ତବ ବପୁଃ ପଶ୍ୟେ, ଯଦି ମେ (ଚକ୍ଷୁଃ) ନ ପଶ୍ୟତି (ତର୍ହି) ମେ ନ ଦୋଷଃ । ୧୦ ।

ଅର୍ଥ—ଏବେ ମଧ୍ୟ ପରିହାସବଶତଃ ପ୍ରସନ୍ନମୁଖ, କର୍ଣ୍ଣଯୁଗଳ-ବ୍ୟାପୀ ସେହି ନେତ୍ର ଉଜ୍ଜ୍ୱଳ ଓ ଉନ୍ନତ ସ୍ତନଯୁଗଳଦ୍ୱାରା କ୍ଷୀଣ ତୁମ୍ଭର ଶରୀରକୁ ମୁଁ ଅଙ୍ଗରେ ହୃଦୟରେ ଦେଖୁଛି, ମୋର ନେତ୍ର ଯଦି ନ ଦେଖୁଛି, ତେବେ ମୋର ଦୋଷ ନୁହେଁ । ୧୦ ।

ପୃ-୮୦—(ଅନ୍ୱୟଃ) ଅଦ୍ୟ ଅପି ନିର୍ମଳଶରଚ୍ଛଶିଗୌରକାନ୍ତିଃ (ସା) ମୁନେଃ ଅପି ଚେତଃ ହରେତ୍, ଅସ୍ଥାସ୍ୟଂ କୃତ, ସୁଧାମୟଂ ତତ୍ ବକ୍ତ୍ରଂ ଅହଂ ଯଦି ପୁନଃ (ତର୍ହି) ଅଧରତଂ ଚୁମ୍ବନ୍ ପିବାମି, ମେ ମନଃ ବ୍ୟଥତେ । ୧୧ ।

**ଅର୍ଥ**—ଏବେ ମଧ୍ୟ ନିର୍ମଳଶରତ୍କାଳୀନ ଚନ୍ଦ୍ରସଦୃଶ ଶୁଭ୍ରକାନ୍ତି ସେ ମୁନିମାନଙ୍କର ମଧ୍ୟ ଚିତ୍ତକୁ ହରଣ କରିବ, ଆମମାନଙ୍କର କଥା କେତେ । ଅମୃତପୂର୍ଣ୍ଣ ସେହି ମୁଖକୁ ମୁଁ ଯଦି ପ୍ରାପ୍ତ ହେବି, ତେବେ ନିରନ୍ତର ଚୁମ୍ବନପୂର୍ବକ ପାନ କରିବି, ମୋର ମନ ବ୍ୟଥିତ ହେଉଅଛି । ୧୧ ।

ଶ୍ଳୋ-୧୨—(ଅନ୍ୱୟଃ) ଅଦ୍ୟ ଅପି ତତ୍‌କମଳରେଣୁସୁଗନ୍ଧଗନ୍ଧଂ ମକରଧ୍ୱଜପାତକାଗ ତତ୍ ପ୍ରେମବାରି, ସୁରତୈକତୀର୍ଥଂ ଯଦି ପୁନଃ ଅହଂ ପ୍ରାପ୍ନୋମି, ତଦବାପ୍ତି ହେତୋଃ ନିୟତଂ ପ୍ରାଣାନ୍ ତ୍ୟଜାମି । ୧୨ ।

**ଅର୍ଥ**—ଏବେ ମଧ୍ୟ ପଦ୍ମରେଣୁରେ ସୁଗନ୍ଧିତ, କନ୍ଦର୍ପପାପନାଶକ ସେହି ପ୍ରେମଜଳ (ପୂର୍ଣ୍ଣ) ସୁରତର ମୁଖ୍ୟତୀର୍ଥ ତାକୁ ଯଦି ମୁଁ ପୁନଃ ପ୍ରାପ୍ତ ହେବି, ତେବେ ତାହାର ପ୍ରାପ୍ତି ନିମିତ୍ତ ନିଶ୍ଚିତଭାବରେ ପ୍ରାଣକୁ ତ୍ୟାଗ କରିବି । ୧୨ ।

ଶ୍ଳୋ-୧୩—(ଅନ୍ୱୟଃ) ଅଦ୍ୟ ଅପି ଅହୋ ସୁନ୍ଦରଲକ୍ଷପୂର୍ଣ୍ଣେ ଅନ୍ୟୋନ୍ୟଂ ଉତ୍ତମଗୁଣାଧିକସଂପ୍ରସଙ୍ଗେ ଜଗତି ତସ୍ୟାଃ ରୂପଂ ଅନ୍ୟାଭିଃ ଉପମିତୁଂ ମୟା ଅପି ନ ଶକ୍ୟଂ; ଇତି ମେ ହୃଦୟେ ବିତର୍କଃ । ୧୩ ।

**ଅର୍ଥ**—ଏବେ ମଧ୍ୟ, ଆଶ୍ଚର୍ଯ୍ୟର ବିଷୟ ଯେ ସୁନ୍ଦରୀମାନଙ୍କର ଲକ୍ଷଲକ୍ଷ ସଂଖ୍ୟା ପୂରିତ, ପରସ୍ପର ଉତ୍ତମ ଗୁଣରେ ଅଧିକାଧିକ ସଂସାରରେ ତାହାର ରୂପକୁ ଅନ୍ୟସହିତ ଉପମାନ ଦେବାକୁ ମୁଁ ମଧ୍ୟ ସମର୍ଥ ନୁହେଁ, ଏପରି ମୋର ହୃଦୟର ତର୍କଣା । ୧୩ ।

ଶ୍ଳୋ-୧୪—(ଅନ୍ୱୟଃ) ଅଦ୍ୟ ଅପି ରୋମାଞ୍ଚିତଚଳସଦ୍‌ବିପୁଳପ୍ରଭବା ସା, ମମ ମନସ୍ତଟିନୀ ସଦା ଅସ୍ତେ, କାଦମ୍ବକେଶରିଚଃ ପ୍ରିୟବଞ୍ଚହଂସୀ ଷଟକୀଷଣଂ ମାଂ ଗାତକ୍ଳମଂ କଥୟତି । ୧୪ ।

ଅର୍ଥ—ଏବେ ମଧ୍ୟ, ରୋମାଞ୍ଚରୂପକଉରଙ୍ଗଶୋଭିତ ଉତ୍ତମ-ସ୍ତନବା ସେ ମୋ ମନରତରଙ୍ଗିଣୀ ସର୍ବଦା ହୋଇଛି, ପଦ୍ମକେଶରବର୍ଣ୍ଣା ପ୍ରିୟରାଜହଂସୀ ସେ, କଟାକ୍ଷଧାତ ମତେ, ନିଜର ଶରୀରର କ୍ଳାନ୍ତିକୁ କହୁଅଛି । ୧୪ ।

ପୃ—୨—(ଅନ୍ୱୟଃ) ଅଦ୍ୟ ଅପି ନୃପତିଶେଖରରାଜପୁତ୍ରୀଂ ସମ୍ପୂର୍ଣ୍ଣ-ଯୌବନମଦାଲସଘୂର୍ଣ୍ଣନେତ୍ରୀଂ ତାଂ ଅହୋ ସ୍ୱର୍ଗାତ୍ ଚ୍ୟୁତାଂ ଗନ୍ଧର୍ବଯକ୍ଷସୁରକିନ୍ନରନାଗକନ୍ୟାଂ ଇବ ଚିନ୍ତୟାମି । ୫ ।

ଅର୍ଥ—ଏବେ ମଧ୍ୟ ନୃପତିଶ୍ରେଷ୍ଠର ପୁତ୍ରୀ ପୂର୍ଣ୍ଣଯୌବନମଦଦ୍ୱାରା ଘୂର୍ଣ୍ଣିତନୟନା ତାକୁ ସ୍ୱର୍ଗରୁ ଖସିଥିବା ଗନ୍ଧର୍ବ ଯକ୍ଷ, ଦେବ, କିନ୍ନର ଓ ନାଗ କନ୍ୟା ସଦୃଶ ମନେ କରୁଛି ? । ୧୫ ।

ପୃ—୬—(ଅନ୍ୱୟଃ) ଅଦ୍ୟ ଅପି ନିଜବପୁଃ କୃଶବେଦମଧ୍ୟାଂ ଉତ୍ତୁଙ୍ଗସଂଭୃତସୁଧାସ୍ତନକୁମ୍ଭଯୁଗ୍ମାଂ ନାନାବିଚିତ୍ରକୃତମଣ୍ଡନ ମଣ୍ଡିତାଙ୍ଗୀଂ ସୁପ୍ତୋତ୍ଥିତାଂ ତାଂ ନହି ଦିବା ନହି ବିସ୍ମରାମି । ୧୬ ।

ଅର୍ଥ—ଏବେ ମଧ୍ୟ ନିଜର ଶରୀର ସଦୃଶ କୃଶବେଦମଧ୍ୟା, ଅମୃତପୂର୍ଣ୍ଣସ୍ତନକୁମ୍ଭଯୁଗଳା, ନାନାପ୍ରକାର ମଣ୍ଡନଦ୍ୱାରା ଭୂଷିତାଙ୍ଗୀ ଶୟନରୁ ଉଠିଥିବା ତାକୁ ରାତି ଓ ଦିନ ଭୁଲି ପାରୁନାହିଁ । ୧୬ ।

ପୃ—୮—(ଅନ୍ୱୟଃ) ଅଦ୍ୟ ଅପି କନକକାନ୍ତିମଦାଲସାଙ୍ଗୀଂ, ବ୍ରୀଡୋତ୍ସୁକାଂ, ନିପତିତାଂ ଇବ ଚେଷ୍ଟମାନାଂ,ଅଙ୍ଗାଙ୍ଗସଙ୍ଗ-ପରିଚୁମ୍ବନଜାତମୋହାଂ, ଜୀବନୌଷଧୀଂ ଇବ ତାଂ ପ୍ରମଦାଂ ସ୍ମରାମି । ୧୭ ।

ଅର୍ଥ—ଏବେ ମଧ୍ୟ ସୁବର୍ଣ୍ଣକାନ୍ତି ଗର୍ବରେ ଅଳସଯୁକ୍ତଶରୀରା, ଲଜ୍ଜା ଓ ଉତ୍କଣ୍ଠାଯୁକ୍ତା, ପଡ଼ିଗଲା ପରି ଚେଷ୍ଟା କରୁଥିବା, ଆଲିଙ୍ଗନ ଓ ଚୁମ୍ବନଦ୍ୱାରା ମୋହପ୍ରାପ୍ତା, ଜୀବନର ଔଷଧ ସଦୃଶ, ସେହି ପ୍ରମଦାକୁ ସ୍ମରଣ କରୁଛି । ୧୭ ।

ଶ୍ଳୋ-୧୮—(ଅନ୍ୱୟଃ) ଅଦ୍ୟ ଅପି ସୁରତକେଳିନିରସ୍ତ୍ରଯୁଦ୍ଧଂ ବନ୍ଧୋପବନ୍ଧ-
ପତନୋତ୍ଥିତଶୂନ୍ୟହସ୍ତଂ ଦନ୍ତୌଷ୍ଠପୀଡ଼ନନଖକ୍ଷତ-
ରକ୍ତସିକ୍ତଂ ତସ୍ୟାଃ ତତ୍ ରତିବନ୍ଧୁରନିଷ୍ଠୁରତ୍ୱଂ
ସ୍ମରାମି । ୧୮ ।

ଅର୍ଥ—ଏବେ ମଧ୍ୟ ତାହାର ସେହି ସୁରତକ୍ରୀଡ଼ାର ଅସ୍ତ୍ରରହିତ ଯୁଦ୍ଧକୁ, ବନ୍ଧ ଓ ଉପବନ୍ଧରେ ପଡ଼ି ଉଠୁଥିବା ରିକ୍ତହସ୍ତକୁ, ଦନ୍ତକ୍ଷତ ଓ ନଖକ୍ଷତ ଜନିତ ରକ୍ତରଞ୍ଜନକୁ ଓ ସୁରତ ସମୟର ନିଷ୍ଠୁରତାକୁ ସ୍ମରଣ କରୁଛି । ୧୮ ।

ଶ୍ଳୋ-୧୯— ଅନ୍ୱୟଃ) ଅଦ୍ୟ ଅପି ଚପଳଲୋଲବିଶାଳନେତ୍ରାଂ,
ଶୀତାଂଶୁମଣ୍ଡଳମୁଖୀଂ, କୁଟିଳାଳକାନ୍ତାଂ, ମତ୍ତେଭକୁମ୍ଭସଦୃଶ-
ସ୍ତନଭାରନମ୍ରାଂ, ବନ୍ଧୂକପୁଷ୍ପସଦୃଶୌଷ୍ଠପୁଟୀଂ,ତାଂ ସ୍ମରାମି ।୧୯।

ଅର୍ଥ—ଏବେ ମଧ୍ୟ ଅସ୍ଥିର ଚପଳ ଓ ବିଶାଳନେତ୍ରୀ, ଚନ୍ଦ୍ରମୁଖୀ, କୁଞ୍ଚିତ ଚୂର୍ଣ୍ଣକୁନ୍ତଳା, ମତ୍ତଗଜକୁମ୍ଭସଦୃଶସ୍ତନଭାରରେ ନମ୍ରା, ବନ୍ଧୂକ ପୁଷ୍ପତୁଲ୍ୟ ଓଷ୍ଠପୁଟୀ ତାକୁ ସ୍ମରଣ କରୁଛି । ୧୯ ।

ଶ୍ଳୋ ୨୦—(ଅନ୍ୱୟଃ) ଅଦ୍ୟ ଅପି ଅହଂ ବରବଧୂସୁରତୋପଭୋଗଂ
ଅନ୍ତରେଣ, ଅନ୍ୟବିଧିନା କ୍ଷଣଂ ନ ଜୀବାମି, ତତ୍ ଭ୍ରାତରଃ
ଦୁଃଖଶାନ୍ତ୍ୟୈ ମରଣଂ ଏବ, ହି ବାଞ୍ଛାମ୍ୟପି ଭବତଃ ତ୍ୱରିତଂ
ଲୁନୀଧ୍ୱମ୍ । ୨୦ ।

ଅର୍ଥ—ଏବେ ମଧ୍ୟ ମୁଁ ଉତ୍ତମବଧୂରସୁରତୋପଭୋଗ ବିନା, ଅନ୍ୟ ପ୍ରକାରରେ କ୍ଷଣକାଳମଧ୍ୟ ଜୀବିତ ରହି ପାରିବି ନାହିଁ, ସେହି କାରଣରୁ ହେ ଭାଇମାନେ ! ଦୁଃଖୋପଶମନପାଇଁ ମୋର ମରଣ (ହେଉଛି ଶ୍ରେଷ୍ଠ) ଅତଃ ମୁଁ ଜଣାଉଅଛି ଅପଣମାନେ ଶୀଘ୍ର ମୋତେ ଛେଦନକର । ୨୦ ।

ମୂ ୧୦—(ଅନ୍ୱୟଃ) ଅଦ୍ୟ ଅପି ହରଃ କାଳକୂଟଂ କିଲ ନ ଉଜ୍ଝତି, କୂର୍ମଃ ଖଲୁ ପୃଷ୍ଠଭାଗେ ଧରଣୀଂ ବିଭର୍ତ୍ତି, ଅମ୍ଭୋନିଧିଃ ଦୁଃସହବାଡ଼ବାଗ୍ନିଂ ବହତି । ସୁକୃତିନଃ ଅଙ୍ଗୀକୃତଂ ପରିପାଳୟନ୍ତି । ୨୧ ।

ଅର୍ଥ—ଏବେ ମଧ୍ୟ ଶିବ କାଳକୂଟକୁ ଛାଡ଼ି ନାହାନ୍ତି; କୂର୍ମ ମଧ୍ୟ ପୃଷ୍ଠରେ ପୃଥ୍ୱୀକୁ ଧାରଣ କରୁଛି, ସମୁଦ୍ର ଅସହ୍ୟ ବାଡ଼ବାଗ୍ନିକୁ ଧାରଣ କରୁଛି । ଉତ୍ତମ ଜନ ସ୍ୱୀକୃତକୁ ଉତ୍ତମଭାବେ ପାଳନ କରନ୍ତି । ୨୧ ।

# ପରିଶିଷ୍ଟ

| ପୃଷ୍ଠା | ପଦ | ନ୍ୟୁଜିଅମ୍ ପୋଥି | ବିଶ୍ୱବିଦ୍ୟାଳୟ ପୋଥି |
|---|---|---|---|
| ୧ | ୪ | ନନ୍ଦଇ | ନନ୍ଦତ |
| ୨ | ୬ | ବେଡ଼ିକ | କଡ଼ିକ |
| ୨ | ୬ | ସେ ମଧୁପ | ସମଧୁପ |
| ୨ | ୩ | ରଙ୍ଗି | ରଞ୍ଜି |
| ୨ | ୧୫ | ସଙ୍ଗତ | ସନ୍ତତ |
| ୩ | ୧୮ | କର | କରେ |
| ୩ | ୨୪ | ଅଥସ୍ତୁ | ସଦସ୍ତୁ |
| ୩ | ୨୬ | ବାଳୀ (ଗଣ ?) | ନୃତ୍ୟବାଳୀ |
| ୪ | ୩୪ | ଧୃତାରୀ | ଧୃତାସି |
| ୫ | ୪୪ | ଭୂଷିତ | ଲୁଣ୍ଠିତ |
| ୬ | ୭ | ନାନା | ନାମ |
| ୬ | ୮ | ଅବଣ | ହରଷ |
| ୮ | ୧୫ | ନିଷ୍ଠସ୍ତୁ | ନିଷ୍ଠସ୍ତେ |
| ୮ | ୧୫ | ତନ୍ମସ୍ତୁ | ସଦସ୍ତେ |
| ୧୨ | ୩ | ସିଅଣ | ଶିଷ୍ୟଗଣ |
| ୧୩ | ୯ | ବର କରନ୍ତ ଗାନ | ନିକର କରେ ସ୍ୱନ |
| ୧୪ | ୧୨ | ମନ୍ଦକ ମଧୁର | ମନ୍ଦ ମଧୁଝର |
| ୧୪ | ୧୬ | ସୁଖରେ ଭ୍ରମରେ ରମଣୀ | ଶୁଣରେ ରମଣୀର ମଣି |
| ୧୭ | ୨ | ଦେଶରେ | ପୁରରେ |
| ୧୭ | ୩ | କଙ୍କଣ | କଙ୍କର |
| ୧୭ | ୫ | ଲଭି ମନେ ଦୁଃଖ | କରି ମନ ଦୁଃଖ |
| ୧୮ | ୯ | ଲଭଲ୍ଲ | ଛନ୍ଦଲ୍ଲ |
| ୧୮ | ୧୧ | ସଖୀ ଅଗେ | ସଖୀଗଣେ |
| ୧୯ | ୧୭ | ଦାଢ଼ | ଦଢ଼ |

| ପୃଷ୍ଠା | ପଦ | ମ୍ୟୁଜିଅମ୍ ପୋଥି | ବିଶ୍ୱବିଦ୍ୟାଳୟ ପୋଥି |
|---|---|---|---|
| ୧୯ | ୧୭ | ଲଭଙ୍ଗ | ଦହିଙ୍ଗ |
| ୨୦ | ୨୩ | ବୋଲଣ ହୃଦରେ କର | ବୋଲି ବେନ କର ଶିରେ |
| ୨୧ | ୨୭ | ଦନ ମୋର ନ ସରଇ | ମୋର ଅଟନ ନ ରସଇ |
| ୨୧ | ୨୯ | ଅଦ୍ଭୁର | କାତର |
| ୨୨ | ୩୧ | ଗଣ୍ଡେ | କଣ୍ଠେ |
| ୨୨ | ୩୨ | ନବ | ଗାଳ |
| ୨୨ | ୨ | ନ ହୋଇଙ୍ଗ କହୁ | କ୍ରୁଦ୍ଧଇ ତା କହୁ |
| ୨୩ | ୭ | ହୋଇବ | ଲଭିବ |
| ୨୪ | ୨୭ | ବନ୍ଧଙ୍ଗ | ଭେଦଙ୍କ |
| ୨୫ | ୩୫ | ପ୍ରିୟ | ଶୀଘ୍ର |
| ୨୬ | ୩୬ | ଏ କଥା କରିବେ | ଏ କଷ୍ଟ ହରିବେ |
| ୨୯ | ୭ | ଇଚ୍ଛାରେ | ଭ୍ରମରେ |
| ୩୦ | ୧୦ | ଭାବଇ | ଭଜଇ |
| ୩୨ | ୧୪ | ବପୋପଦ୍ମା | ବଷାପଦ୍ମା |
| ୩୨ | ୧୪ | ନାହିଁ ତା | ନାହିଁ ନା |
| ୩୨ | ୧୫ | ଜ୍ଞତବ୍ୟମେବ | ଜ୍ଞାନାଢ଼ ତାତୋ |
| | | ଯଦ ମେ ହୁ ପିନ୍ଦା | ଯଦ ମେ୧ଦ୍ୟ ମୁଗ୍ଧ |
| ୩୨ | ୧୫ | ସାନ୍ଧା | ଗାନ୍ଧା |
| ୩୩ | ୧୭ | ମାଣୁ | ମଦ୍ୟ |
| ୩୩ | ୧୭ | ଏବ | ଏକଃ |
| ୩୪ | ୧୮ | ସ୍ମପୂର୍ଣ୍ଣତେ | ସମ୍ପୂର୍ଣ୍ଣତେ |
| ୩୪ | ୧୮ | ସମନ୍ୱତେନାପି | ରସାନ୍ୱତତ୍ତ୍ୱାବୁ |
| | | ସୁଟଧାପମେନ | ସୁଟଭିକ୍ଷଟନନ |
| ୩୪ | ୧୮ | ବରଭୋଜନ ଏ | ସ୍ୱାଦୁବର ଭୋଜନ ଏ |
| | | ସ୍ପାରେ ସାର | ସ୍ପାର |

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| ୧ | ୧ | ନିବନ୍ଧଃ | ନିବନ୍ଧାଃ |
| ୩ | ୨୩ | କଳାବନ୍ତୀ | କଳାବନ୍ତ |
| ୪ | ୧୨ | ସାରଙ୍ଗ | ସାରଙ୍ଗୀ |
| ୬ | ୧୫ | କଳାବଣ୍ଟ | କଳାବନ୍ତ |
| ୧୫ | ଶେଷ | ନ କଲ୍ପ | କଲ୍ପ |
| ୨୮ | ୩ | ସେବାର୍ପିତେ | ସେବ୍ୟଃପିତେ |
| ୩୦ | ୧୫ | ସ୍ତୁତା | ତୁ |
| ୩୦ | ୧୬ | ଚେଚ୍ଛେତ୍ | ନେଚ୍ଛେତ୍ |
| ୩୨ | ୨୩ | ଶୁଣିବ | ଶୁଣିବେ |
| ୩୩ | ୪ | ଶିରଂସ | ଶିରାଂସି |
| ୩୩ | ୧୪ | କୁରୁଷ | କୁରୁଷ୍ୱ |
| ୩୪ | ୧୪ | ପରସ୍ପୁ | ପୁରସ୍ପୁ |
| ୩୫ | ୭ | କାଲନ୍ଦୀ | କାଳନ୍ଦୀ |
| ୩୫ | ୧୦ | ସଂସଚରୋ | ସଂସୂଚରୋ |
| ୩୫ | ଶେଷ | ୨୨ | ୨୧ |
| ୩୬ | ଶେଷ | (୩) | (୨) |
| ୩୬ | ୯ | ରମ୍ୟାଂ | ରମ୍ୟେ |
| ୩୮ | ୧୭ | ଶୁଣ | ପ୍ରାଣୁ |
| ୪୨ | ୧ | ଗଚ୍ଛ | ଗଚ୍ଛ |

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| ୪୩ | ୧୩ | ସମୁଦ୍ଧତାଃ | ସମୁଦ୍ଧତା |
| ୪୪ | ୧୮ | ଶ୍ଲାଷ୍ଣ | ଶ୍ଲାଷ୍ଣ୍ |
| ୪୫ | ୬ | ଭର | ଜର |
| ୪୬ | ଶେଷ | ଚୂର୍ମ୍ଣୈ | ଚୂର୍ମ୍ଣୈଃ |
| ୪୭ | ୫ | ଶୃଙ୍ଗାର | ଶୃଙ୍ଗାର |
| ୪୮ | ୧୦ | ଜିଁତ | ଜିଁତଂ. |
| ୫୩ | ୩ | ମମ | ମ |
| ୫୩ | ୨୦ | ହୋଇବସବାମା | ହୋଇବା ସ୍ୱକାମା |
| ୫୬ | ୪ | ମିଶ୍ରି | ଖସି |
| ୫୯ | ପାଦଟୀକା | (କ) (ଖ) | (କ) (ଗ) |
| ୬୦ | ଶେଷ | ବଗ୍ଲେଲ | ବଲ୍ଲେଲ |
| ୬୩ | ୭ | ମର୍ମେ | ଶ୍ରମେ |
| ୬୩ | ୧୮ | କରେ | କର୍ଣ୍ଣେ |
| ୬୪ | ୮ | ଚୂଡୁକା | ଚୂଡୁକା |
| ୬୬ | ୨ | ସ୍ଥୀମ୍ | ସ୍ଥୀମ୍ |
| ୬୭ | ୪ | ଦୃଶ୍ୟାଂ ସ୍ନଗମି ।୨୭। | ଦୃଶାଂ ସ୍ନଗମି ।୧୭। |
| ୬୮ | ୧୭ | ଅଙ୍ଗ | ଅଙ୍ଗେ |
| ୭୧ | ୨ | ଶୁଣ | ଶୁଣ |
| ୭୨ | ୭ | ଯେହେଁ | ଯେହ୍ଲେ |
| ୭୪ | ୧୨ | କଂ | କଂ |

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| ୭୪ | ଶେଷ | ସଦ୍ଗୁଣଣେ | ସଦ୍ଗୁଣଠୋ |
| ୭୫ | ୧ | ଚର° | ଚଚର° |
| ୭୮ | ୧୧ | ହ୍ୱଚୈ | — |
| ୭୮ | ୧୮ | ମରଇ | ସରଇ |
| ୮୦ | ୧୨ | ବକ୍ତ | ବକ୍ତ୍ର° |
| ୮୬ | ୭ | ସଦ୍ | ଛ |
| ୮୬ | ୧୬ | କର | କର |
| ୯୧ | ୩ | ବାଦ୍ଧାସ୍ତ | ବାଦ୍ଧାଶ |

———